# ସାହିତ୍ୟ ସମ୍ରାଟ
# ବିକ୍ରମ ଦେବବର୍ମ୍ମା

ପଦ୍ମଚରଣ ସାହୁ



ସାହିତ୍ୟସମ୍ରାଟ

# ବିକ୍ରମଦେବ ବର୍ମା

ପଦ୍ମଚରଣ ସାହୁ



ସାହିତ୍ୟସମ୍ରାଟ
ବିକ୍ରମଦେବ ବର୍ମା
ଲେଖକ :
ପଦ୍ମଚରଣ ସାହୁ
ଅଶୋକନଗର, ବ୍ରହ୍ମପୁର-୪
ପ୍ରକାଶକ :
ବଳଭଦ୍ର ରଥ
ଆଶା ପୁସ୍ତକାଳୟ
ବାର୍କ୍ସ, ବ୍ରହ୍ମପୁର-୧
ଗଂଜାମ (ଓଡ଼ିଶା)
ମୁଦ୍ରାକର :
ଅଭିମନ୍ୟୁ ପାଢ଼ୀ
ସନ୍ତୋଷ ପ୍ରିଣ୍ଟର୍ସ, ବ୍ରହ୍ମପୁର-୯
ପ୍ରଚ୍ଛଦଶିଳ୍ପୀ :
ଶଶିକାନ୍ତ ରାଉତ
ପ୍ରଥମ ପ୍ରକାଶ : ୧୯୯୫
ମୂଲ୍ୟ :
ସାଦା ବନ୍ଧେଇ ଟ ୨୫-୦୦
ବୋର୍ଡ଼ ବନ୍ଧେଇ ଟ ୩୫-୦୦

ISBN-81-86189-08-4

**SAHITYASAMRAT**
**VIKRAM DEV VARMA**
Writer :
**Padma Charan Sahu**
Ashok Nagar, Berhampur-4
Publisher :
**Balabhadra Rath**
Asha Pustakalaya, Barracks,
Berhampur-1, Ganjam (Orissa)
Printer :
**Abhimanyu Padhy**
Santosh Printers, Berhampur-9
Cover Design :
**Sashikanta Raut**
First Edition : 1995
Price :
Popular Rs. 25-00
Deluxe Rs. 35-00

# ମୁଖବନ୍ଧ

ସାହିତ୍ୟସମ୍ରାଟ ବିକ୍ରମଦେବ ବର୍ମା ଥିଲେ ଆନ୍ଧ୍ରୋତ୍କଳ ସଂସ୍କୃତି ସମନ୍ୱୟର ପ୍ରତୀକ । ଊନବିଂଶ ଶତାବ୍ଦୀର ଅଷ୍ଟମ ଦଶକଠାରୁ ବିଂଶ ଶତାବ୍ଦୀର ମଧ୍ୟଭାଗ ଯାଏ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ—ବିଶେଷତଃ ଶେଷ ପର୍ଯ୍ୟାୟରେ ଏରାଜ୍ୟର ଦକ୍ଷିଣସୀମା ନିର୍ଦ୍ଧାରଣ ପାଇଁ ଆନ୍ଧ୍ର ଏବଂ ଉତ୍କଳୀୟମାନେ ମାତୃଗତ ବୈରିତା, ରାଜନୈତିକ ଟଣାପଟା ଓ ସାମାଜିକ ବିଦ୍ୱେଷର ଶିକାର ହୋଇପଡ଼ିଥିବା ବେଳେ, ଏଦୁଇ ଭାଷାଭାଷୀଙ୍କ ମଧ୍ୟରେ ସାଂସ୍କୃତିକ ସମନ୍ୱୟ ସକାଶେ ସେ ଯେଉଁ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ ତାହା ଉଭୟ ରାଜ୍ୟର ଇତିହାସରେ ଅବିସ୍ମରଣୀୟ ରହିବ ।

ଆନ୍ଧ୍ର ବିଶ୍ୱବିଦ୍ୟାଳୟକୁ ଅନୁଦାନ, ଆନ୍ଧ୍ର ସାହିତ୍ୟ ସମାଜକୁ ନେତୃତ୍ୱ ଓ ସାହିତ୍ୟିକଙ୍କୁ ପୃଷ୍ଠପୋଷକତା ତଥା ସେହି ଭାଷାଭାଷୀଙ୍କୁ ବିକ୍ରମଦେବ ବର୍ମାଙ୍କର ସାହାଯ୍ୟ ସହଯୋଗ ସେତେବେଳେ ଓଡ଼ିଆଙ୍କୁ ସୁଖ ଲାଗି ନଥିଲା । ସେହିଭଳି ବର୍ମା ମହୋଦୟଙ୍କ ଉତ୍କଳ ବିଶ୍ୱବିଦ୍ୟାଳୟ ଗ୍ରନ୍ଥଶ୍ରେଣୀଙ୍କୁ ଉତ୍ସାହିତ କରିବା, କଟକ ଭେଷଜ ମହାବିଦ୍ୟାଳୟ ପ୍ରତିଷ୍ଠା ପାଇଁ ଆର୍ଥିକ ସହାୟତା ଦେବା, ଓଡ଼ିଆ ପତ୍ରପତ୍ରିକା ପ୍ରକାଶନରେ ସହଯୋଗ କରିବା, ଓଡ଼ିଆ କବି ଓ ସାହିତ୍ୟିକଙ୍କୁ ସାହାଯ୍ୟ ଦେବା ଏବଂ ଉତ୍କଳ ସମ୍ମିଳନୀର ନେତୃତ୍ୱ ନେବାରେ ତେଲେଙ୍ଗାମାନଙ୍କର ହୁଏତ ଗାତ୍ରଦାହ ହୋଇଥିବ । କାରଣ ବିକ୍ରମଦେବ ବର୍ମା ଓଡ଼ିଆ ବଂଶୋଦ୍‌ଭବ ହୋଇଥିଲେ ମଧ୍ୟ ତେଲୁଗୁ ଭାଷାଭାଷୀ ଅଞ୍ଚଳରେ ଜନ୍ମଗ୍ରହଣ କରିଥିଲେ ଏବଂ ଜୀବନର ଦୁଇ-ତୃତୀୟାଂଶ ସମୟ ସେ ଆନ୍ଧ୍ର ଅଞ୍ଚଳରେ ହିଁ ଅତିବାହିତ କରିଥିଲେ । ଏଣୁ ଜନ୍ମର ଦାବୀ ଓ କର୍ମର ପ୍ରେରଣାକୁ ନେଇ ଓଡ଼ିଆ ଏବଂ ତେଲେଙ୍ଗା—ପ୍ରତ୍ୟେକ ଭାଷାଭାଷୀ ତାଙ୍କୁ 'କେବଳ ନିଜର' ମନେକରି ବେଳେବେଳେ ପରସ୍ପର ଅସହିଷ୍ଣୁ ହୋଇ ପଡ଼ନ୍ତି ।

କିନ୍ତୁ ସାମାନ୍ୟ ରାଜନୈତିକ ସୀମାରେଖା ଓ ଭାଷାଗତ ସଂକୀର୍ଣ୍ଣତାର ଟିକିଏ ଊର୍ଦ୍ଧ୍ୱକୁ ଯାଇ ମହାଭାରତୀୟ ଦୃଷ୍ଟିକୋଣରୁ ବିଚାର କଲେ ସମସ୍ତେ ଜାଣିପାରିବେ ଯେ—ବିକ୍ରମଦେବ ବର୍ମା ଥିଲେ ଜାତୀୟ ସଂପଦ; ଭାରତୀୟ ସଂସ୍କୃତିର ମୂର୍ତ୍ତିମନ୍ତ ବାର୍ତ୍ତାବହ । ପାଠକେ ଏହି ଦୃଷ୍ଟିରେ ବର୍ମା ମହୋଦୟଙ୍କୁ ଗ୍ରହଣ କରିବେ ବୋଲି ମୁଁ ଆଶାକରେ ।

ତା ୨୨-୧୧-୧୯୯୫
ବ୍ରହ୍ମପୁର

(ସ୍ୱାକ୍ଷର)
ଲେଖକ

# ସୂଚୀପତ୍ର

# ସାହିତ୍ୟସମ୍ରାଟ ବିକ୍ରମଦେବ ବର୍ମା

ଜୟପୁର ରାଜବଂଶୋଦ୍ଭବ ବିକ୍ରମଦେବ ବର୍ମା ଥିଲେ ଭାରତୀୟ ସଂସ୍କୃତିର ମୂର୍ତ୍ତିମନ୍ତ ପ୍ରତୀକ । ବେଦ ଉପନିଷଦ କେବଳ ଅଧ୍ୟୟନ ନୁହେଁ, ସେସବୁର ନିର୍ଦ୍ଧାରିତ ନୀତିନିୟମ ସେ ନିଷ୍ଠାର ସହିତ ପାଳନ କରୁଥିଲେ । ସେ ଥିଲେ ଆଜୀବନ ସାହିତ୍ୟସାଧକ । ସଂକୀର୍ଣ୍ଣ ଆଞ୍ଚଳିକତା ଓ ଭାଷାଗତ ସୀମା ପ୍ରତିବନ୍ଧକତାଠାରୁ ବହୁ ଊର୍ଦ୍ଧ୍ୱକୁ ଉଠି ଯାଇଥିଲା ତାଙ୍କର ସାହିତ୍ୟ । ଓଡ଼ିଆ ଓ ତେଲୁଗୁ ଭାଷାରେ ଅଗାଧ ପାଣ୍ଡିତ୍ୟ ତାଙ୍କୁ କରିଥିଲା ଆନ୍ଧ୍ରୋତ୍କଳ ସଂସ୍କୃତିର ସଂଯୋଗ ସେତୁ । ସଂସ୍କୃତ ଭାଷାସାହିତ୍ୟରେ ପାରଦର୍ଶିତା ତାଙ୍କୁ ସାର୍ବଭୌମ ବିଦ୍ୱାନ୍ ପ୍ରତିପାଦିତ କରିଥିଲା । ସେ ଥିଲେ ତେଲଗୁ ଭାଷାର ବିଶିଷ୍ଟ ସାହିତ୍ୟିକ । ଆନ୍ଧ୍ର ବିଶ୍ୱବିଦ୍ୟାଳୟର ଭାଷାସାହିତ୍ୟ ଅଧ୍ୟୟନ ପାଇଁ ପାଠ୍ୟକ୍ରମ ନିର୍ଦ୍ଧାରକ ଓ ଆନ୍ଧ୍ର ସାହିତ୍ୟ ପରିଷଦ 'ଭାରତୀତୀର୍ଥ'ର କୁଳପତି । ଏଣେ ସେତେବେଳର ଓଡ଼ିଶା ପାଇଁ ପାଟଣା ବିଶ୍ୱବିଦ୍ୟାଳୟ ଓଡ଼ିଆ ଭାଷା ସାହିତ୍ୟର ପାଠ୍ୟପୁସ୍ତକ ମନୋନୟନ କମିଟି ସଭ୍ୟ । ଓଡ଼ିଆ ସାହିତ୍ୟର ବିଶିଷ୍ଟ ଲେଖକ ଓ ପୃଷ୍ଠପୋଷକ । ନିଜର କର୍ମମୟ ଜୀବନରେ ଦୀର୍ଘ ୪୭ ବର୍ଷ ସେ ଓଡ଼ିଶା ବାହାରେ ବିଶାଖାପାଟଣାଠାରେ ଅବସ୍ଥାନ କରିଥିଲେ । ସେଠାରେ ସେ ଥିଲେ ପ୍ରବାସୀ ଓଡ଼ିଆଙ୍କ ଦିଗ୍‌ଦର୍ଶକ, ସଂସ୍କୃତିରକ୍ଷକ ତଥା ତତ୍ତ୍ୱାବଧାରକ । ତାଙ୍କର ସଂଗଠନ ଶକ୍ତି ବିଚ୍ଛିନ୍ନ ଓଡ଼ିଆ ଜନସାଧାରଣଙ୍କୁ ଗୋଟିଏ ସୂତ୍ରରେ ବାନ୍ଧି ରଖିଥିଲା ଦୀର୍ଘ ଅର୍ଦ୍ଧଶତାବ୍ଦୀ ପାଇଁ । ସେ ଥିଲେ ଓଡ଼ିଶାର ବ୍ୟାସକବି ଫକୀରମୋହନ ସେନାପତି ଓ କବିବର ରାଧାନାଥ

ରାୟଙ୍କ ସାହିତ୍ୟିକ ବନ୍ଧୁ । ଉତ୍କଳ ଗୌରବ ମଧୁସୂଦନ ଦାସଙ୍କର ସେ ଥିଲେ ଅନ୍ତରଙ୍ଗ ସହକର୍ମୀ । ତାଙ୍କୁ କୁହାଯାଉଥିଲା ଓଡ଼ିଶାର ବିକ୍ରମାଦିତ୍ୟ । ସର୍ବୋପରି ସାହିତ୍ୟସମ୍ରାଟ ବିକ୍ରମଦେବ ବର୍ମା ଥିଲେ ଓଡ଼ିଶାର ଜାତୀୟ ସଂଗଠନ 'ଉତ୍କଳ ସମ୍ମିଳନୀ' ଦଶମ ଅଧିବେଶନର ସମ୍ମାନାସ୍ପଦ ସଭାପତି ।

ଏହି ସ୍ମିତପ୍ରଜ୍ଞ, ବିଦ୍ୟୁତବନ୍ତ, ଦୟାବାନ, ଧର୍ମାନୁରାଗୀ, ସାଂସ୍କୃତିକନେତା, ପଣ୍ଡିତପ୍ରବର ବିକ୍ରମଦେବ ବର୍ମା ସତ୍ତରୀ ତଥା ୭୨ ବର୍ଷ ବୟସରେ ଜୟପୁର ରାଜସିଂହାସନ ଅଳଂକୃତ କରିଥିଲେ ମଧ୍ୟ ଏଥିପୂର୍ବେ ଅବସ୍ଥାଚକ୍ରରେ ଦୀର୍ଘ ଅର୍ଦ୍ଧଶତାବ୍ଦୀରୁ ଊର୍ଦ୍ଧ୍ୱ ସମୟ ଧରି ଜୟପୁରରୁ ବିଚ୍ଛିନ୍ନ ହୋଇ ରହିଥିଲେ ।

## ଜୟପୁର ରାଜ୍ୟ ଓ ରାଜବଂଶ

ପୂର୍ବେ ଜୟପୁର ରାଜ୍ୟର ନାମଥିଲା ନନ୍ଦପୁର । ଏହି ପ୍ରାଚୀନ 'ନନ୍ଦପୁର' ରାଜ୍ୟକୁ ପଞ୍ଚଦଶ ଶତାବ୍ଦୀ ମଧ୍ୟଭାଗଯାଏଁ ଶିଳାବଂଶ ରାଜାମାନେ ଶାସନ କରୁଥିଲେ । ଐତିହାସିକ ବିବରଣୀରୁ ଜଣାଯାଏ ଯେ—ଏଠାରେ ଗଙ୍ଗରାଜୁଙ୍କ ପୁତ୍ର ବିଶ୍ୱନାଥ ରାଜୁ ଖ୍ରୀ: ୧୩୫୩ ଠାରୁ ୧୩୭୦ ଯାଏଁ, ତାଙ୍କର ପୁତ୍ର ଭୈରବରାଜୁ ଖ୍ରୀ: ୧୩୭୦ ଠାରୁ ୧୩୯୭, ବିଶ୍ୱନାଥ ରାଜୁ (୨ୟ) ଖ୍ରୀ: ୧୩୯୭ ଠାରୁ ୧୪୨୭ ଏବଂ ପୋଷ୍ୟପୁତ୍ର ପ୍ରତାପ ଗଙ୍ଗରାଜୁ ଶିଳାବଂଶର ଶେଷ ରାଜାଭାବେ ଖ୍ରୀ ୧୪୨୭ ଠାରୁ ୧୪୪୩ ଯାଏଁ ଶାସନ କରିଥିଲେ । ପ୍ରତାପଗଙ୍ଗ ବି ଅପୁତ୍ରକ ଥିଲେ ।

ଏହି ସମୟରେ କାଶ୍ମୀର ରାଜା କୁମ୍ଭରାଜ ଦେବଙ୍କ ଦ୍ୱିତୀୟ ପୁତ୍ର ବିନାୟକ ଦେବ ତୀର୍ଥ ଭ୍ରମଣରେ ଆସିଥିଲେ । ସେ ଅପୁତ୍ରକ ରାଜା ପ୍ରତାପଗଙ୍ଗ- ରାଜୁଙ୍କ କନ୍ୟାଙ୍କୁ ବିବାହ କରିଥିଲେ ଏବଂ ଯୌତୁକ ସୂତ୍ରରେ ନନ୍ଦପୁର ରାଜ୍ୟପାଇ ଖ୍ରୀ:୧୪୪୩ରେ ରାଜସିଂହାସନ ଅଳଂକୃତ କରିଥିଲେ । ଏହା- ଠାରୁ ନନ୍ଦପୁରରେ ସୂର୍ଯ୍ୟବଂଶ ପ୍ରତିଷ୍ଠା ହେଲା । ଏହି ବଂଶର ରାଜାମାନେ ପରବର୍ତ୍ତୀ ପ୍ରାୟ ୫୦୦ ବର୍ଷ ନନ୍ଦପୁର ତଥା ପରିବର୍ତ୍ତିତ ଆଧୁନିକ ଜୟପୁର ରାଜ୍ୟ ଶାସନ କଲେ । କ୍ରମାନୁସାରେ ସେମାନେ ହେଲେ—

| | |
|---|---|
| ବିନାୟକ ଦେବ | ଖ୍ରୀ: ୧୪୪୩-୧୪୭୬ |
| ବିଜୟଚନ୍ଦ୍ର ଦେବ | ୧୪୭୬-୧୫୧୦ |
| ଭୈରବ ଦେବ | ୧୫୧୦-୧୫୨୭ |
| ବିଶ୍ୱନାଥ ଦେବ | ୧୫୨୭-୧୫୭୧ |
| ବଳରାମ ଦେବ | ୧୫୭୧-୧୫୯୭ |
| ଯଶୋବନ୍ତ ଦେବ | ୧୫୯୭-୧୬୩୭ |
| ବୀରବିକ୍ରମ ଦେବ | ୧୬୩୭-୧୬୬୯ |
| କୃଷ୍ଣଚନ୍ଦ୍ର ଦେବ | ୧୬୬୯-୧୬୭୨ |
| ବିଶ୍ୱମ୍ଭର ଦେବ (୧ମ) | ୧୬୭୨-୧୬୭୬ |
| ମଲ୍ଲକୀବର୍ଦ୍ଧନ କୃଷ୍ଣଦେବ | ୧୬୭୬-୧୬୮୧ |
| ହରି ଦେବ | ୧୬୮୧-୧୬୮୪ |
| ବଳରାମ ଦେବ (୨ୟ) | ୧୬୮୪-୧୬୮୬ |
| ରଘୁନାଥ କୃଷ୍ଣଦେବ | ୧୬୮୬-୧୭୦୮ |
| ରାମଚନ୍ଦ୍ର ଦେବ (୧ମ) | ୧୭୦୮-୧୭୧୧ |
| ବଳରାମ ଦେବ (୩ୟ) | ୧୭୧୧-୧୭୧୩ |
| ବିଶ୍ୱମ୍ଭର ଦେବ (୨ୟ) | ୧୭୧୩-୧୭୫୨ |
| ଲାଲକୃଷ୍ଣ ଦେବ | ୧୭୫୨-୧୭୫୮ |
| ବିକ୍ରମ ଦେବ (୧ମ) | ୧୭୫୮-୧୭୮୧ |
| ରାମଚନ୍ଦ୍ର ଦେବ (୨ୟ) | ୧୭୮୧-୧୮୨୫ |
| ବିକ୍ରମ ଦେବ (୨ୟ) | ୧୮୨୫-୧୮୬୦ |
| ରାମଚନ୍ଦ୍ର ଦେବ (୩ୟ) | ୧୮୬୦-୧୮୮୯ |
| କୋର୍ଟ ଅଫ୍ ଓ୍ୱାର୍ଡ୍ସ | ୧୮୮୯-୧୮୯୫ |
| ବିକ୍ରମ ଦେବ (୩ୟ) | ୧୮୯୫-୧୯୨୦ |
| ରାମଚନ୍ଦ୍ର ଦେବ (୪ର୍ଥ) | ୧୯୨୦-୧୯୩୧ |

ପ୍ରାଚୀନ ନନ୍ଦପୁର ଓ ଆଧୁନିକ ଜୟପୁର ରାଜ୍ୟର ପାଞ୍ଚଶହ ବର୍ଷ ସୂର୍ଯ୍ୟବଂଶୀ ଶାସନ କାଳରେ ଉତ୍ତରାଧିକାର ତଥା ରାଜ୍ୟ ପରିଚାଳନାରେ ଅନେକ ସୁଘଟଣା ଏବଂ ଦୁର୍ଘଟଣା ମଧ୍ୟ ଘଟିଯାଇଛି ।

ସୂର୍ଯ୍ୟବଂଶ ପ୍ରତିଷ୍ଠାତା ବିନାୟକ ଦେବଙ୍କ ଶାସନର ଚତୁର୍ଥ ବର୍ଷରେ ପ୍ରଜାମେଳି ସଙ୍ଗଠିତ ହୋଇଥିଲା । ଏଥିରେ ରାଜା ଭୟଭୀତ ହୋଇ ଜଣେ ବଂଜାରା ବଣିଆ ସର୍ଦ୍ଦାରର ସହଯୋଗ କାମନା କରିଥିଲେ । ବଣିଆ ଜଣକ ଦଶହଜାର ବଳଦ ଯୋଗାଇ ଦେଇଥିଲେ । ଏହି ବଳଦମାନଙ୍କ ସାହାଯ୍ୟରେ ବିଦ୍ରୋହ ଦମନ କରି ରାଜା ବିନାୟକ ଦେବ ନିଜକୁ ପ୍ରତିଷ୍ଠିତ କରି ପାରିଥିଲେ । ଏଣୁ ସେତେବେଳଠାରୁ ବଳଦବନ୍ଧା ପଧା ନନ୍ଦପୁର ରାଜ୍ୟର ରାଜସଙ୍କେତ ବିବେଚିତ ହେଲା । ବିନାୟକ ଦେବ ପାର୍ଶ୍ୱବର୍ତ୍ତୀ କେତେକ ଛୋଟ ଛୋଟ ରାଜ୍ୟ ଜୟକରି ନନ୍ଦପୁର ସୀମା ସମ୍ପ୍ରସାରିତ କରି ପାରିଥିଲେ ଏବଂ ରାଜ୍ୟରେ ସର୍ବେଶ୍ୱର ଶିବ ମନ୍ଦିରର ପ୍ରତିଷ୍ଠା କରିଥିଲେ । ବିନାୟକଙ୍କ ପୁତ୍ର ବିଜୟଚନ୍ଦ୍ର ଦେବ ନିଜର ଶାସନ କାଳରେ ନନ୍ଦପୁର ରାଜନଅର ପରିସରରେ ବଲ୍ଲଭ ନାରାୟଣ ଏବଂ କନକଦୁର୍ଗା ମନ୍ଦିର ପ୍ରତିଷ୍ଠା ଓ ମୂର୍ତ୍ତି ସ୍ଥାପନ କରିଥିଲେ ।

ବିଜୟଚନ୍ଦ୍ରଙ୍କ ପୁତ୍ର ଭୈରବ ଦେବ ବୀରପୁରୁଷ ଥିଲେ । ଧନୁଶର ଚାଳନାରେ ତାଙ୍କର ପାରଦର୍ଶିତା ଯୋଗୁଁ ସେ ପ୍ରସିଦ୍ଧି ଲାଭ କରିଥିଲେ । ନିଜ ରାଜ୍ୟର ବୋବିକ୍ଷଗଡ଼ଠାରେ 'ଭୈରବ ସାଗର' ନାମକ ବୃହତ୍ ପୁଷ୍କରିଣୀ ସେ ଖୋଳାଇଥିଲେ । ଏହାଙ୍କ ପୁତ୍ର ବିଶ୍ୱନାଥ ଦେବ ୧୮ ବର୍ଷ ବୟସରେ ରାଜା ହୋଇଥିଲେ ମଧ୍ୟ ପ୍ରବୀଣ ନରପତି ଭଳି ରାଜ୍ୟ ପରିଚାଳନା କରିଥିଲେ । ସେ ଦୀର୍ଘ ୪୪ ବର୍ଷ ଧରି ଶାନ୍ତିରେ ପ୍ରଜାପାଳନ କଲେ । ତାଙ୍କ ପୁତ୍ର ବଳରାମ ଦେବ ପିତାଙ୍କ ମୃତ୍ୟୁପରେ ୩୧ ବର୍ଷ ବୟସରେ ରାଜତ୍ୱ ଗ୍ରହଣ କରିଥିଲେ । ବଳରାମଙ୍କ ପରେ ପୁତ୍ର ଯଶୋବନ୍ତ ଦେବ ମାତ୍ର ୧୬ ବର୍ଷ ବୟସରେ ରାଜା ହେଲେ ଏବଂ ଏ ରାଜାଙ୍କ ସମୟରେ କ୍ରମାନ୍ୱୟରେ ତିନିବର୍ଷ ରାଜ୍ୟରେ ବର୍ଷା ନହେବା ଯୋଗୁଁ ଦୁର୍ଭିକ୍ଷ ପଡିଥିଲା । ଯଶୋବନ୍ତ ୫୬ ବର୍ଷ ଜୀବିତ ଥାଇ ୪୦ ବର୍ଷ ଶାସନ କରିଥିଲେ । ଏହାଙ୍କ ପୁତ୍ର ବୀର ବିକ୍ରମଦେବ ଜଣେ ପ୍ରସିଦ୍ଧ ରାଜା ପ୍ରତିପାଦିତ ହେଲେ । ଏହି ରାଜାଙ୍କ ଶାସନ କାଳରେ ଗୁପ୍ତେଶ୍ୱର ଶିବ ଆବିର୍ଭୂତ ହୋଇଥିଲେ । ରାଜା ନିଷ୍ଠାପର ଶିବଭକ୍ତ ଥିଲେ । ସେ ନିଜ ଶାସନ କାଳରେ ନନ୍ଦପୁରରୁ ରାଜଧାନୀକୁ ଜୟପୁର ସ୍ଥାନାନ୍ତର କରି-

ଥିଲେ । ଏହି ସ୍ଥାନାନ୍ତର ଯୋଗୁଁ ରାଜ୍ୟର ନାମ 'ଜୟପୁର' ନାମିତ ହୋଇଥିଲା । ସେ ନିଜର ବିମାତା ପୁତ୍ରଙ୍କୁ ଗୁଣପୁର ତାଲୁକା ଦାନ କରି ଭ୍ରାତୃପ୍ରେମର ପରାକାଷ୍ଠା ପ୍ରତିପାଦନ କରିଥିଲେ । ରାଜା ବୀରବିକ୍ରମ ପାରଳାଖେମୁଣ୍ଡି ଜେମାଙ୍କୁ ଦ୍ୱିତୀୟ ରାଣୀ ଭାବେ ଗ୍ରହଣ କରିଥିଲେ ଓ ନିଜର ଉଦାରତାବଶତଃ ଗୁମାଗଡ଼ଠାରୁ କଣିଗାଁ ପର୍ଯ୍ୟନ୍ତ ଅଞ୍ଚଳ ପାରଳାରାଜ୍ୟ ପାଇଁ ଛାଡ଼ି ଦେଇଥିଲେ । ସେ ଗୋଲକୁଣ୍ଡାରୁ ମହାରାଜା ପଦବୀ ପାଇଥିଲେ ।

ବୀରବିକ୍ରମଙ୍କ ପୁତ୍ର କୃଷ୍ଣଚନ୍ଦ୍ର ଦେବ ୩୯ ବର୍ଷ ବୟସରେ ରାଜା ହୋଇଥିଲେ । ତାଙ୍କର ସମୟରେ ରାଜ୍ୟ ଭିତରେ ବୋବିଲି, ଦେଉପଲ୍ଲୀ, ରେକାପଲ୍ଲୀ, ମରୁଆମୁଠା ଓ କଣ୍ଟକାମୁଠା ଜମିଦାରୀ ସୃଷ୍ଟି ହୋଇଥିଲା । ସେ ମାତ୍ର ତିନିବର୍ଷ ଶାସନ କରିଥିଲେ । ଏହାଙ୍କ ପରେ ପୁତ୍ର ବିଶ୍ୱମ୍ଭର ଦେବ ୨୪ ବର୍ଷ ବୟସରେ ରାଜା ହେଲେ । ସେ ମାତ୍ର ଚାରିବର୍ଷର ରାଜତ୍ୱ ମଧ୍ୟରେ ପେଦାପେଦମ୍, ରାମଭଦ୍ରପୁର, ମାକୁଆ, ଛଉଡ଼ି, କୁରୁପାମ, ପାଲେମୁଠା, ପାଲକୋଣ୍ଡା, ବୀରକୋଟ, ପାଉଁଶପେଣ୍ଡା, ପୋରାମ୍, ରେଙ୍ଗବାଲସା, ଅଣ୍ଡରାମୁଠା, କୋଡ଼ୁରୁ, ମୁବଣ୍ଡାପଲ୍ଲୀ, କଳାହାଣ୍ଡି, ନୂଆଗଡ଼ ଓ ଖଡ଼ିଆଳ ପ୍ରଭୃତି ଜମିଦାରଙ୍କୁ ନିଜ ଅଧୀନସ୍ଥ କଲେ । ତାଙ୍କର ଦେହାନ୍ତ ପରେ କ୍ରମାନୁସାରେ ଦୁଇଭାଇ ରାଜା ହୋଇଥିଲେ । ସେ ସମସ୍ତେ ସ୍ୱଳ୍ପାୟୁ ଥିଲେ । କନିଷ୍ଠ ଭାଇ ବଳରାମ ଦେବ (୨ୟ) ଅପୁତ୍ରକ ଥିବାଯୋଗୁଁ ଗୁଣପୁରରୁ ପିତୃବ୍ୟଙ୍କ ପୌତ୍ର ରଘୁନାଥ କୃଷ୍ଣ-ଦେବଙ୍କୁ ପୋଷ୍ୟପୁତ୍ର ଭାବେ ଗ୍ରହଣ କରିଥିଲେ ଏବଂ ନିଜେ ଜୀବିତ ଥାଇ ରଘୁନାଥଙ୍କୁ ମାତ୍ର ୧୬ ବର୍ଷ ବୟସରେ ରାଜା କରାଇ ଦେଇଥିଲେ । ଏହାଙ୍କ ସମୟରେ ବିଷ୍ଣୁ କଟକ ଓ ମେରିଙ୍ଗର ରାଜାଦ୍ୱୟ ଜୟପୁର ରାଜ୍ୟ ଅଧୀନରେ ଜମିଦାର ଭାବେ ରହିଲେ । ରଘୁନାଥଙ୍କ ପୁତ୍ର ରାମଚନ୍ଦ୍ର ଦେବ (୧ମ) ମାତ୍ର ତିନିବର୍ଷ ଶାସନ କରି ସାଙ୍ଗବାଲସା ଜମିଦାରୀକୁ ନିଜ ରାଜ୍ୟରେ ମିଶାଇ ଦେଇଥିଲେ । ଏ ରାଜାଙ୍କୁ ତାଙ୍କର ଭାଇ ହତ୍ୟାକରି ବଳରାମ ଦେବ (୩ୟ) ଭାବେ ନିଜେ ରାଜା ହେଲେ । ସେ ମାତ୍ର ଦୁଇବର୍ଷ ଶାସନ କରିବା ପରେ ୨୪ ବର୍ଷ ବୟସରେ ତାଙ୍କର

ଦେହାନ୍ତ ହୋଇ ଯାଇଥିଲା । ଏଣୁ ତୃତୀୟ, ଭାଇ ବିଶ୍ୱମ୍ଭର ଦେବ (୨ୟ) ଭାବେ ରାଜା ହୋଇଥିଲେ । ସେ ବହୁ ବିବାହ କରିଥିଲେ ଏବଂ ୩୯ ବର୍ଷ ଶାସନ କାଳ ମଧ୍ୟରେ ହାଇଦରାବାଦ ନିଜାମଙ୍କଠାରୁ 'ଝାଡ଼ଖଣ୍ଡ ବାଦଶା' ଉପାଧି ପାଇଥିଲେ । ଏ ପଦବୀ ବଂଶାନୁକ୍ରମେ ପରବର୍ତ୍ତୀ ରାଜାମାନେ ବ୍ୟବହାର କରିଥିଲେ । ବିଶ୍ୱମ୍ଭର ଦେବ ଅନେକ କୂପ ପୁଷ୍କରିଣୀ ଖୋଳାଇଥିଲେ ଏବଂ ଝଂଜାବତୀ ନଦୀର କରାଟ ସେତୁ ନିର୍ମାଣ କରିଥିଲେ । ଏହାଙ୍କ ପରଲୋକରେ ରାଣୀମାନେ ଚିତାରେ ଝାସ ଦେଇଥିଲେ ।

ବିଶ୍ୱମ୍ଭର ଦେବ ଅପୁତ୍ରକ ଥିଲେ । ଏଣୁ ଦେହାନ୍ତ ପରେ ତାଙ୍କର ବିମାତା ପୁତ୍ର ନୀଳକଣ୍ଠ ଦେବ ରାଜା ହେଲେ । ସେ ୪୬ ବର୍ଷ ବୟସରେ ସିଂହାସନ ଆରୋହଣ କରି ଛଅବର୍ଷ ମାତ୍ର ଶାସନ କରିଥିଲେ । ତାଙ୍କର ସାନଭାଇ ବିକ୍ରମ ବିଜୟନଗରମ୍ ରାଜା ବିଜୟରାମ ରାଜୁଙ୍କ ସହାୟତାରେ ତାଙ୍କୁ ଗାଦିଚ୍ୟୁତ କରିଥିଲେ ଓ ନିଜେ ବିକ୍ରମ ଦେବ (୧ମ) ଭାବେ ରାଜା ହୋଇଥିଲେ । ସାହାଯ୍ୟର ପ୍ରତିଦାନ ସ୍ୱରୂପ ବିକ୍ରମଦେବ ମାଡ଼ଗୁଲ ଜମିଦାରୀ ବିଜୟରାମ ରାଜୁଙ୍କୁ ଦେଇଥିଲେ ଏବଂ ପରେ ୪୦ ହଜାର ଟଙ୍କା ଦେଇ ପୁଣି କିଣିଥିଲେ । ଏସମୟରେ ନବାବଙ୍କ ବଦଳରେ ବ୍ରିଟିଶମାନଙ୍କୁ ଜମାବନ୍ଦି ଦିଆଯାଇଥିଲା । ବିକ୍ରମଦେବ ବସ୍ତର ରାଜ୍ୟ ସହ ଯୁଦ୍ଧ କରି ସେ ରାଜ୍ୟର ପତାକା ଛଡ଼ାଇ ନେଇ ଆସିଥିଲେ । ସେ ନିଜର ପ୍ରିୟ ମନ୍ତ୍ରୀ ଜଗନ୍ନାଥ ପାତ୍ରଙ୍କ ନାମରେ 'ଜଗନ୍ନାଥପୁର' ଗ୍ରାମ ସ୍ଥାପନ କରିଥିଲେ । ଏହାଙ୍କ ପରେ ପୁତ୍ର ରାମଚନ୍ଦ୍ର ଦେବ (୨ୟ) ରାଜାହେଲେ । ସେ ନିଜର ପୁରୁଖା ମନ୍ତ୍ରୀଙ୍କ ନାମରେ 'ଜଗନ୍ନାଥ ସାଗର' ଖୋଳାଇଲେ । ମନ୍ତ୍ରୀଙ୍କଭାଇ ନୀଳକଣ୍ଠ ପାତ୍ରଙ୍କ ତତ୍ତ୍ୱାବଧାନରେ ଖୋଳା ଯାଇଥିବା ପୁଷ୍କରିଣୀକୁ ସେ 'ନୀଳକଣ୍ଠ ସାଗର' ନାମିତ କରିଥିଲେ । ପିତା ଜୀବିତ ଥାଇ ରାମଚନ୍ଦ୍ର ଦେବଙ୍କୁ ରାଜ୍ୟ ଶାସନ ଦାୟିତ୍ୱ ଦେଇ ତାଲିମ କରାଇଥିଲେ । ରାଜା ରାମଚନ୍ଦ୍ର ମେଘମାଳ ତୋଟା ଓ ଅନ୍ଧାର ତୋଟା ନାମରେ ଦୁଇଟି ଆମ୍ରୋଦ୍ୟାନ ରୋପଣ କରାଇ ଥିଲେ ଏବଂ ବଲ୍ଲଭ ନାରାୟଣ ଓ କନକ ଦୁର୍ଗା ମୂର୍ତ୍ତିକୁ ନନ୍ଦପୁରରୁ ଆଣି ଜୟପୁର ଦୁର୍ଗରେ ବିଜେ କରାଇଲେ । ଏ ସମୟରେ ଇଷ୍ଟ ଇଣ୍ଡିଆ କମ୍ପାନୀ ସହିତ

ବିଜୟନଗରମ୍ ରାଜା ବିଜୟରାମ ରାଜୁ ଯୁଦ୍ଧକରି ନିହତ ହେଲେ । ରାମଚନ୍ଦ୍ର ଦେବ (୨ୟ) ବିଜୟନଗରମ ରାଜାଙ୍କୁ ସାହାଯ୍ୟ କରି ନଥିବା ଯୋଗୁଁ ବ୍ରିଟିଶମାନଙ୍କ ପ୍ରିୟପାତ୍ର ହୋଇଥିଲେ ଏବଂ ଇଷ୍ଟ ଇଣ୍ଡିଆ କମ୍ପାନୀ ଜୟପୁର ରାଜ୍ୟକୁ ଚିରସ୍ଥାୟୀ ସନନ୍ଦ ଦେଇଥିଲେ ।

ରାମଚନ୍ଦ୍ର ଦେବଙ୍କ ପୁତ୍ର ବିକ୍ରମଦେବ (୨ୟ) ପରେ ରାଜା ହେଲେ । ସେ ଜୟପୁରରେ ବୈଷ୍ଣବଧର୍ମ ପ୍ରଚାରକ ଚୈତନ୍ୟ ଦେବଙ୍କ ମୂର୍ତ୍ତି ପ୍ରତିଷ୍ଠା କରିଥିଲେ ଏବଂ ଜାମ୍ବୁମୁଣ୍ଡା ଗ୍ରାମରୁ ଭଗବତୀ ଦେବୀଙ୍କ ମୂର୍ତ୍ତି ଆଣି ଜୟପୁରରେ ସ୍ଥାପନ କରିଥିଲେ । ବହୁ ହାତୀ, ଘୋଡା, ଗଣ୍ଡା, ଗୟଳ ସେ ପୋଷିଥିଲେ । ତାଙ୍କ ରାଜତ୍ୱ କାଳରେ ଚନ୍ଦନ ଯାତ୍ରା ଓ ଦୋଳ ଯାତ୍ରା ମହା ଆଡ଼ମ୍ବରରେ ପାଳିତ ହେଉଥିଲା । ରାମଚନ୍ଦ୍ର ଓ କୃଷ୍ଣଚନ୍ଦ୍ର ନାମରେ ଏ ରାଜାଙ୍କର ଦୁଇ ପୁତ୍ର ଥିଲେ ।

ଜ୍ୟେଷ୍ଠ ପୁତ୍ର ରାମଚନ୍ଦ୍ର ଦେବ (୩ୟ) ପରେ ଖ୍ରୀ: ୧୮୬୦ ରେ ରାଜା ହେଲେ । କନିଷ୍ଠ ପୁତ୍ର କୃଷ୍ଣଚନ୍ଦ୍ର ଦେବ ଜଣେ ଧର୍ମପରାୟଣ ପଣ୍ଡିତ ଥିଲେ । ସେ ରାମଚନ୍ଦ୍ରଙ୍କ ଶାସନରେ ସନ୍ତୁଷ୍ଟ ହେଲେ ନାହିଁ । ଏଣୁ କିଛିକାଳ ରାଜଧାନୀ ଜୟପୁର ଛାଡ଼ି ଶ୍ରୀକୂର୍ମ କ୍ଷେତ୍ରରେ ଅବସ୍ଥାନ କରିଥିଲେ । ଖ୍ରୀ: ୧୮୬୬ ବେଳକୁ ସେ ଶ୍ରୀକୂର୍ମ କ୍ଷେତ୍ରରେ ଥିବା କଥା ସେଠାକାର ଏକ ଶିଳାଲେଖରୁ ଜଣାଯାଏ । ଦୁଇ ଭାଇଙ୍କ ମଧ୍ୟରେ ମତାନ୍ତର ଓ ମନାନ୍ତର ଯୋଗୁଁ ଅବଶେଷରେ କୃଷ୍ଣଚନ୍ଦ୍ର ଦେବ ସବୁଦିନ ପାଇଁ ଜୟପୁର ରାଜ୍ୟ ଛାଡ଼ିଲେ । ରାଜା ରାମଚନ୍ଦ୍ର ଦେବ (୩ୟ) ଅନେକ ଧନସମ୍ପଦ ଓ ଦନ୍ତାହାତୀ ସଂଗ୍ରହ କରିଥିଲେ । ସେ କେତେ ମୁସଲମାନ ପରିବାରଙ୍କୁ ଆଣି ଜୟପୁର ରାଜ୍ୟରେ ରଖିଲେ ଏବଂ ଅନେକ କୀର୍ତ୍ତି ମଧ୍ୟ ସ୍ଥାପନ କରିଥିଲେ । ଏ ରାଜାଙ୍କ ଦେହାନ୍ତ ବେଳକୁ ତାଙ୍କର ପୁତ୍ର ନାବାଳକ ଥିଲେ । ତେଣୁ ଖ୍ରୀ: ୧୮୮୯ ଠାରୁ ୧୮୯୫ ପର୍ଯ୍ୟନ୍ତ ଜୟପୁର ରାଜ୍ୟ କୋର୍ଟ ଆଫ ଓ୍ବାର୍ଡସ ଅଧୀନରେ ରହିଥିଲା । ସାବାଳକ ହେବା ପରେ ବିକ୍ରମ ଦେବ (୩ୟ) ୨୧ ବର୍ଷ ବୟସରେ ରାଜା ହେଲେ । ଏହାଙ୍କ ନାବାଳକତ୍ୱ ସମୟରେ ଯଥାକ୍ରମେ ମେନେଜର ଓ ଶିକ୍ଷକଭାବେ ଆସିଥିବା ଟେଲର ସାହେବ ଓ ଡ଼ାକ୍ତର ମାର୍ଶ ଜୟପୁରରେ ଅବସ୍ଥାନ

କରିଥିଲେ । ସେମାନେ ରାଜାଙ୍କ ପକ୍ଷରୁ କରଚକୋକଳ, ପ୍ରତିଷ୍ଠା କରି ଜଙ୍ଗଲ ସମ୍ପଦର ବିନଯୋଗ କରିଥିଲେ । ଏ ସମୟରେ ସାଲୁରଠାରୁ ଜୟପୁର ଘାଟି ରାସ୍ତା ନିର୍ମିତ ହୋଇଥିଲା । ସେହି ଘାଟି ପଥ ଜୟପୁରରେ ବ୍ୟବସାୟର ପ୍ରଧାନ ସହାୟକ ହେଲା ଏବଂ ରାଜ୍ୟର ଅର୍ଥନୈତିକ ଉନ୍ନତି ଘଟିଲା । ବିକ୍ରମ ଦେବ (୩ୟ)ଙ୍କ ସମୟରେ ଜୟପୁର 'ସୂର୍ଯ୍ୟମହଲ' ନିର୍ମିତ ହୋଇଥିଲା । ପ୍ରଥମ ବିଶ୍ୱଯୁଦ୍ଧ ସମୟରେ ସେ ବ୍ରିଟିଶ ସରକାରଙ୍କ ଯୁଦ୍ଧପାଣ୍ଠିକୁ ବିପୁଳ ଦାନ କରିଥିଲେ । ରାଜ୍ୟରେ ଗମନାଗମନର ସୁବିଧା ପାଇଁ ରାଜା ଇନ୍ଦ୍ରାବତୀ ନଦୀ ଉପରେ ସେତୁ ନିର୍ମାଣ କରିଥିଲେ ଏବଂ ଅର୍ଥନୈତିକ, ସାଂସ୍କୃତିକ, ସାମାଜିକ ଆଦି ସର୍ବାଙ୍ଗୀନ ଉନ୍ନତିରେ ମନୋନିବେଶ କରିଥିବା ଯୋଗୁଁ ବ୍ରିଟିଶ ସରକାରଙ୍କ ଠାରୁ K. C. I. E. ଉପାଧି ପାଇଥିଲେ । ଏହି ରାଜା ବିକ୍ରମ ଦେବ (୩ୟ) ଖ୍ରୀ: ୧୯୨୦ ଯାଏଁ ଜୟପୁରର ରାଜା ଥିଲେ ।

## ବିକ୍ରମଦେବ ବର୍ମାଙ୍କ ଜନ୍ମ ଓ ବାଲ୍ୟ ଜୀବନ

ଜୟପୁର ରାଜା ରାମଚନ୍ଦ୍ର ଦେବ (୩ୟ)ଙ୍କ ଭାଇ ପଣ୍ଡିତ କୃଷ୍ଣଚନ୍ଦ୍ର ଦେବ ସବୁଦିନ ପାଇଁ ରାଜ୍ୟ ଛାଡ଼ି; କିଛିଦିନ ଗୁଣପୁର ଓ ମାଡ଼ଗୁଳରେ ଅବସ୍ଥାନ ପରେ ତତ୍କାଳୀନ ଗଞ୍ଜାମ ଜିଲ୍ଲା ଶିକାକୋଲ ତାଲୁକା ପର୍ବତାଲପେଟା ଶାସନରେ ଘରଭଡ଼ା ନେଇ ସସ୍ତ୍ରୀକ ରହିଲେ । ଏହି ଗ୍ରାମ ବଂଶଧାରା ନଦୀତଟରେ ଅବସ୍ଥିତ ଏକ ତେଲଙ୍ଗା ବ୍ରାହ୍ମଣ ଶାସନ । କୃଷ୍ଣଚନ୍ଦ୍ର ଦେବ ଜ୍ୟୋତିଷ ଶାସ୍ତ୍ର ଜାଣିଥିଲେ । ଏଣୁ ସେ ଅଞ୍ଚଳରେ ଜ୍ୟୋତିଷ ଓ ପଣ୍ଡିତଭାବେ ତାଙ୍କର ଖ୍ୟାତି ଅଳ୍ପଦିନ ମଧ୍ୟରେ ପ୍ରସାରିତ ହୋଇ ଯାଇଥିଲା । ସେ ଜୟପୁର ରାଜାଙ୍କଠାରୁ ମାସିକ ପାଞ୍ଚଶହ ଟଙ୍କା ବୃତ୍ତି ପାଉଥିଲେ । ଏହି ପର୍ବତାଲପେଟା ଶାସନରେ କୃଷ୍ଣଚନ୍ଦ୍ର ଦେବଙ୍କ ଔରସ ଓ ରେଖାଦେବୀଙ୍କ ଗର୍ଭରୁ ଖ୍ରୀ: ୧୮୬୯ ଜୁନ୍ ମାସ ୨୮ ତାରିଖରେ ବିକ୍ରମଦେବ ବର୍ମା ଜନ୍ମଗ୍ରହଣ କରିଥିଲେ । ଏଥିପୂର୍ବେ କୃଷ୍ଣଚନ୍ଦ୍ର ଦେବଙ୍କର ଏକ କନ୍ୟା ସନ୍ତାନ ଜନ୍ମ ହୋଇଥିଲା । ଏହି ସନ୍ତତିର ନାମ ବିଷ୍ଣୁପ୍ରିୟା ଏବଂ ଶ୍ରଦ୍ଧାରେ ତାକୁ ସୁବର୍ଣ୍ଣ ବୋଲି ସମସ୍ତେ ଡାକୁଥିଲେ ।

ପର୍ବତାଲପେଠା ଗ୍ରାମରେ ସ୍କୁଲ ନଥିବା ଯୋଗୁଁ ବଳରାମଙ୍କୁ ଗୃରବର୍ଷ ବୟସରେ ପିତା କୃଷ୍ଣଚନ୍ଦ୍ର ଦେବ ସପରିବାର ସେଠାରୁ ଅଳ୍ପଦୂରରେ ଅବସ୍ଥିତ ବଂଶଧାରା ନଦୀ ଅପର ପାର୍ଶ୍ୱସ୍ଥ ନଗଣ୍ଡି କଟକ ଗ୍ରାମକୁ ଗ୍ଲଲିଗଲେ । ସେହିଠାରେ ଏକ ତେଲୁଗୁ ପ୍ରାଥମିକ ସ୍କୁଲ ଥିଲା । ବଳରାମଦେବ ବର୍ମାଙ୍କ ବାଲ୍ୟଶିକ୍ଷା ସେହିଠାରେ ଆରମ୍ଭ ହେଲା । ସେ ସେହି ସ୍କୁଲରେ ଛଅବର୍ଷ ତେଲୁଗୁ ଓ ଇଂରାଜୀ ଅଧ୍ୟୟନ କରିଥିଲେ ଏବଂ ନିଜଘରେ ନିଜର ପୂର୍ବୋକ୍ତ ଭ୍ରାତା ରଘୁନାଥ ରଥଙ୍କଠାରୁ ଓଡ଼ିଆରେ ଶିକ୍ଷା ଗ୍ରହଣ କରି କେଶବ କୋଇଲି,

### ଜାତକ




ବଳରାମଦେବ ବର୍ମା : ଜନ୍ମ ତା ୨୮-୭-୧୮୭୯

ରବିବାର, ରାତ୍ର ୨ ଘଣ୍ଟା

ଜନ୍ମବେଳକୁ ମଙ୍ଗଳ ମହାଦଶା ଅବଶିଷ୍ଟ ୪ ବର୍ଷ ୫ ମାସ ୨୭ ଦିନ

ବାରମାସୀ କୋଇଲ, କାନ୍ତ କୋଇଲି, ଗୋପୀଭାଷା, ମଥୁରା ମଙ୍ଗଳ, କମଳଲୋଚନ ଚଉତିଶା ଓ ଭାଗବତ ପ୍ରଭୃତି ପଢ଼ିଥିଲେ । ପିତା କୃଷ୍ଣଚନ୍ଦ୍ର ପୁତ୍ର ବୀରମଙ୍କୁ ଜ୍ୟୋତିଷ ଶାସ୍ତ୍ର ଶିକ୍ଷା ଦେଇଥିଲେ । ପ୍ରଖର ସ୍ମରଣଶକ୍ତି ଯୋଗୁଁ ଯାହା ଥରେ ପଢ଼ିବେ ତାହା ବୀରମ ଦେବଙ୍କର ସବୁଦିନ ପାଇଁ ମନେ ରହି ଯାଉଥିଲା । ବୀରମ ଅମରକୋଷ ଅଭିଧାନକୁ ସମ୍ପୂର୍ଣ୍ଣ ମୁଖସ୍ଥ କରି ଦେଇଥିଲେ । ସେହିଭଳି ତେଲୁଗୁ ଭାଷାରେ ସମସ୍ତ ପାଠ୍ୟପୁସ୍ତକ ସମେତ ବାଲରାମାୟଣ ଓ ସଂସ୍କୃତ କୃଷ୍ଣ ଶତକ, ମିତମଞ୍ଜରୀ ପ୍ରଭୃତି ଗ୍ରନ୍ଥ ଅଧ୍ୟୟନ କରିଥିଲେ । ସ୍କୁଲ ପାଠ୍ୟ ଭାବେ ମାନ୍ଦ୍ରାଜ ସରକାରଙ୍କ ଦ୍ୱାରା ପ୍ରଚଳିତ ଇଂରାଜୀ ଫାଷ୍ଟ ଏବଂ ସେକେଣ୍ଡ ରିଡ଼ର ପୁସ୍ତକ ପଢ଼ା ଏସମୟରେ ବୀରମ ଶେଷ କରିଥିଲେ । ତାଙ୍କ ପାଖରେ କୌଣସି ବାଲ୍ୟ ଚପଳତା ନଥିଲା । ସେ ଖେଳାଖେଳି ନକରି ସବୁବେଳେ ପଢ଼ାପଢ଼ିରେ ମନୋନିବେଶ କରିଥିଲେ ଓ ଖୁବ୍ ଶାନ୍ତଶିଷ୍ଟ, ଗମ୍ଭୀର ତଥା ଜ୍ଞାନପିପାସୁ ଥିଲେ ।

## ମାଡ଼ଗୁଲ ରାଜାଙ୍କ ଦତ୍ତପୁତ୍ର

ବୀରମଦେବ ବର୍ମା ସାତବର୍ଷ ବୟସରେ ମାଡ଼ଗୁଲ ରାଜାଙ୍କ ପୋଷ୍ୟପୁତ୍ର ହେଲେ । ଏହି କ୍ଷୁଦ୍ର ଜମିଦାରୀ ମାଡ଼ଗୁଲ ବିଶାଖାପାଟଣା ଜିଲ୍ଲା ଆନକାପଲ୍ଲୀ ସହରଠାରୁ ୨୨ ମାଇଲ ଦୂରରେ ଅବସ୍ଥିତ । ଅତୀତରେ ଏହା ନନ୍ଦପୁର ରାଜ୍ୟ ଅଧୀନସ୍ଥ ଜମିଦାରୀ ଥିଲା । ନନ୍ଦପୁରରେ ସୂର୍ଯ୍ୟବଂଶର ପ୍ରତିଷ୍ଠାତା ରାଜା ବିନାୟକ ଦେବ କାଶ୍ମୀରରୁ ଆସିବା ବେଳେ ତାଙ୍କ ସହିତ ନିଜର ଜଣେ ସଂପର୍କୀୟ ଭାଇ ଆସି ଯାଇଥିଲେ । ଏଣୁ ରାଜା ବିନାୟକ ମାଡ଼ଗୁଲ ଜମିଦାରୀ ସୃଷ୍ଟି କରି ତାଙ୍କୁ ସେଠାରେ ରାଜା କରାଇଥିଲେ । କାଶ୍ମୀର ରାଜବଂଶର 'ଭୂପତି' ସଂଜ୍ଞା ମାଡ଼ଗୁଲ ରାଜାମାନେ ବଂଶାନୁକ୍ରମେ ନିଜ ନାମ ସହିତ ବ୍ୟବହାର କରୁଥିଲେ । ସେହି ବଂଶୋଦ୍ଭବ କୃଷ୍ଣ ଭୂପତି ଦେବ ଖ୍ରୀ: ୧୮୩୨ ଠାରୁ ୧୮୭୫ ଯାଏଁ ମାଡ଼ଗୁଲ ରାଜ୍ୟ ଶାସନ କରିଥିଲେ । ସେ ଅପୁତ୍ରକ ଥିଲେ । କୃଷ୍ଣ ଭୂପତିଙ୍କ ଦୁଇ ରାଣୀ ସୀତା ପାଟମହାଦେଈ ଓ ନୀଳମଣି ଦେବୀ ସହୋଦରା ଭଉଣୀ ଥିଲେ । ସେମାନେ ଗୁଣପୁର ରାଜବଂଶର ଜେମା ଓ ବୀରମ ଦେବଙ୍କ ପିତା କୃଷ୍ଣଚନ୍ଦ୍ର ଦେବଙ୍କ ନିଜ ମାଉସୀ ଥିଲେ । ରାଜା କୃଷ୍ଣ ଭୂପତିଙ୍କ ଖ୍ରୀ: ୧୮୭୫ରେ ଦେହାନ୍ତ

ହେବା ପରେ ତାଙ୍କର ଶେଷଇଚ୍ଛା ମୁତାବକ ବଡ଼ରାଣୀ ସୀତା ପାଟମହାଦେଈ ନିଜ ପୁତୁରାର ପୁଅ ବୀରମଦେବ ବର୍ମାଙ୍କୁ ପୋଷ୍ୟପୁତ୍ର ଭାବେ ଗ୍ରହଣ କରିଥିଲେ । ଏଣୁ ବୀରମଦେବ ନଗରା କଟକଠାରେ ନିଜର ପିତାମାତାଙ୍କୁ ଛାଡ଼ି ଖ୍ରୀ: ୧୮୭୬ରେ ମାଡ଼ୁଗୁଲ ଆସି ଯାଇଥିଲେ । ଏଠାରେ ରହିବାର ତୃତୀୟ ବର୍ଷରେ ବୀରମଦେବ ବର୍ମାଙ୍କ ଜନ୍ମଦାତ୍ରୀ ମାଆଙ୍କର ନଗରା କଟକ ଠାରେ ପରଲୋକ ହୋଇ ଯାଇଥିଲା ।

ମାଡ଼ଗୁଲ ରାଜା କୃଷ୍ଣ ଭୂପତିଙ୍କ ଦ୍ୱିତୀୟ ପତ୍ନୀ ମାଳମଣି ଦେବୀଙ୍କର ଆମ୍ଭି ଦେବୀ ନାମରେ ଏକମାତ୍ର କନ୍ୟା ଥିଲେ । ସେ ଜୟପୁର ରାଜା ରାମଚନ୍ଦ୍ର ଦେବ (୩ୟ)ଙ୍କ ଦ୍ୱିତୀୟ ପୁତ୍ର ଭାଇ ବିଶ୍ୱମ୍ବର ଦେବଙ୍କୁ ବିବାହ କରିଥିଲେ ।

## ମାଡଗୁଲ ମକଦ୍ଦମା

ମାଡ଼ଗୁଲର ସ୍ୱର୍ଗତ ରାଜା କୃଷ୍ଣଭୂପତିଙ୍କ ଯେଉଁ ଶେଷଇଚ୍ଛା ବା 'ଉଇଲ' ଭିତ୍ତିରେ ତାଙ୍କର ବିଧବା ପାଟରାଣୀ ସୀତାଦେବୀ ବୀରମଦେବ ବର୍ମାଙ୍କୁ ଦତ୍ତପୁତ୍ରଭାବେ ଗ୍ରହଣ କରିଥିଲେ, ତାହା ବିରୁଦ୍ଧରେ ଦ୍ୱିତୀୟ ରାଣୀ ମାଳମଣି ଦେବୀ ମକଦ୍ଦମା ରୁଜୁ କଲେ । ତାଙ୍କର ଅଭିଯୋଗ ଥିଲା—ଉକ୍ତ ଉଇଲ ଜାଲ୍ କରାଯାଇଛି ବା ସେଭଳି କୌଣସି ଉଇଲ କୃଷ୍ଣ ଭୂପତି କରି ନଥିଲେ । ଖ୍ରୀ: ୧୮୮୧ରେ ଦାଏର କରିଥିବା ଏହି ମକଦ୍ଦମାରେ ସେ ଆବେଦନ କରିଥିଲେ ଯେ ଉକ୍ତ ଉଇଲ ଏବଂ ପୋଷ୍ୟପୁତ୍ର ଗ୍ରହଣ କାର୍ଯ୍ୟକୁ ରଦ୍ଦ କରାଯାଉ ।

ନିମ୍ନ ଅଦାଲତ ମାଳମଣି ଦେବୀଙ୍କ ଆବେଦନ ଗ୍ରହଣ କରିଥିଲେ ଏବଂ ସମ୍ପୃକ୍ତ ଉଇଲ ବିଶ୍ୱାସଯୋଗ୍ୟ ନୁହେଁ ବୋଲି ରାୟ ଦେଇଥିଲେ । ଫଳରେ ଦତ୍ତସତ୍ତ୍ୱ ରଦ୍ଦ ହୋଇ ଯାଇଥିଲା ଓ ବୀରମଦେବ ବର୍ମା ମାଡ଼ଗୁଲରୁ ନଗରା-କଟକ ଫେରି ଆସିଥିଲେ ।

ନାବାଳକ ବୀରମ ଦେବ ବର୍ମାଙ୍କ ପିତା କୃଷ୍ଣଚନ୍ଦ୍ର ଦେବ ନିମ୍ନ ଅଦାଲତର ରାୟ ବିରୁଦ୍ଧରେ ଖ୍ରୀ: ୧୮୮୨ ରେ ମାନ୍ଦ୍ରାଜ ହାଇକୋର୍ଟରେ ଅପିଲ କଲେ । ସେ ନିଜେ ଏଥିରେ ଦ୍ୱିତୀୟ ପ୍ରତିବାଦୀ ଥିଲେ । କିନ୍ତୁ ଉଚ୍ଚ ନ୍ୟାୟାଳୟରୁ ମକଦ୍ଦମାର ଫଳାଫଳ ଘୋଷଣା ହେବା ଆଗରୁ ଖ୍ରୀ: ୧୮୮୪

ଚୈତ୍ର ଶୁକ୍ଳ ଚତୁର୍ଥୀ ଦିନ ତାଙ୍କର ଦେହାନ୍ତ ହୋଇ ଯାଇଥିଲା । ପୂର୍ବରୁ ବିକ୍ରମ ଦେବ ବର୍ମା ୯ ବର୍ଷ ବୟସରେ ମାତାଙ୍କୁ ହରାଇଥିଲେ । ଏବେ ୧୫ ବର୍ଷ ବୟସରେ ପିତାଙ୍କୁ ହରାଇ ଅନାଥ ହୋଇଗଲେ । ସ୍ୱର୍ଗତ ପିତା କୃଷ୍ଣଚନ୍ଦ୍ର ଦେବ ଖ୍ରୀ: ୧୮୮୧ ରେ ନିଜର ଏକମାତ୍ର କନ୍ୟା ବିଷ୍ଣୁପ୍ରିୟା ଦେବୀଙ୍କୁ ପାରଳାଖେମୁଣ୍ଡି ଯୁବରାଜ ଗୌରଚନ୍ଦ୍ର ଗଜପତିଙ୍କ ସହିତ ବିବାହ ଦେଇଥିଲେ । ସେତେବେଳକୁ ବିଷ୍ଣୁପ୍ରିୟାଙ୍କ ବୟସ ୧୩ ବର୍ଷ ଏବଂ ଗୌରଚନ୍ଦ୍ରଙ୍କ ବୟସ ୧୪ ବର୍ଷ । କିନ୍ତୁ ବିବାହର ମାତ୍ର ଏକବର୍ଷ ପରେ ୧୮୮୨ ଆଷାଢ଼ ଶୁକ୍ଳ ଦ୍ୱାଦଶୀ ତିଥିରେ ବିଷ୍ଣୁପ୍ରିୟାଙ୍କ ପରଲୋକ ହୋଇ ଯାଇଥିଲା । ଏ ମୃତ୍ୟୁ ସ୍ୱାଭାବିକ ନଥିଲା; କେହି ବିଷ ପ୍ରୟୋଗ କରି ତାଙ୍କୁ ମାରି ଦେଇଥିବା ଅଭିଯୋଗ ହୋଇଥିଲା । ସେଥିପାଇଁ ପାରଳା ରାଜ ପରିବାରରୁ କେତେ ଜଣ ଦଣ୍ଡିତ ହୋଇଥିଲେ । ମାଆ, ବଡ଼ଭଉଣୀ ଓ ବାପାଙ୍କୁ ହରାଇବାପରେ ବିକ୍ରମଦେବ ବର୍ମାଙ୍କର ନିଜଲୋକ ବୋଲି ଆଉ କେହି ନଥିବା ଯୋଗୁଁ ନିଜକୁ ସେ ବଡ ଅସହାୟ ମଣୁଥିଲେ ।

ମାନ୍ଦ୍ରାଜ ହାଇକୋର୍ଟର ରାୟ ଖ୍ରୀ: ୧୮୮୪ ଶେଷରେ ପ୍ରକାଶ ପାଇଲା । ଏଥିରେ ନିମ୍ନ ଅଦାଲତର ରାୟକୁ ରଦ୍ଦ କରାଯାଇଥିଲା । ଫଳରେ ବିକ୍ରମଦେବ ବର୍ମାଙ୍କ ଦତ୍ତସତ୍ତ୍ୱ କାଏମ୍ ରହିଲା ଏବଂ ସେ ନଗରୀ କଟକରୁ ପୁଣି ମାଡ଼ଗୁଲ ଆସିଗଲେ । କିନ୍ତୁ ସେତେବେଳ ଯାଏଁ ସେ ନାବାଳକ ଥିଲେ । ଏଣୁ ମାଡ଼ଗୁଲ ରାଜ୍ୟ କୋର୍ଟ ଆଫ୍ ଓ୍ୱାର୍ଡ଼ସ ଅଧୀନରେ ରହିଲା । ନାବାଳକ ରାଜା ବିକ୍ରମଦେବ ବର୍ମାଙ୍କର ତତ୍ତ୍ୱାବଧାରକ ଭାବେ ମାନ୍ଦ୍ରାଜ ସିଭିଲ୍ ସର୍ଭିସ ଅଫିସର ଜେ. ଏସ୍. ବ୍ୟାର୍ଡ଼ାସ ନିଯୁକ୍ତି ପାଇଲେ । ବ୍ୟାର୍ଡ଼ାସ ସାହେବ ଖ୍ରୀ: ୧୮୮୫ ରେ ବିକ୍ରମଦେବ ବର୍ମାଙ୍କୁ ଇଂରାଜୀ ଶିକ୍ଷା ଦେବା ପାଇଁ ବିଶାଖ ପାଟଣାରେ ଅବସ୍ଥାପିତ କଲେ । ସେ ସେଠାରେ ଭାବେ ୧୮ ମାସ ଇଂରାଜୀ ଶିକ୍ଷା ଲାଭ କରିଥିଲେ ।

ମାଳମଣି ଦେବୀ ମାନ୍ଦ୍ରାଜ ହାଇକୋର୍ଟ ରାୟ ବିରୁଦ୍ଧରେ ଇଂଲଣ୍ଡର ପ୍ରିଭି-କାଉନସିଲରେ ଅପିଲ୍ କଲେ । ମକଦ୍ଦମା ପାଇଁ ମାଳମଣି ଦେବୀଙ୍କର ସମସ୍ତ ଖର୍ଚ୍ଚ ଜୟପୁର ରାଜା ରାମଚନ୍ଦ୍ର ଦେବ (୩ୟ) ବହନ କରୁଥିଲେ ଏବଂ ଏହି ରାଜାଙ୍କ ବିମାତା ପୁତ୍ର ଭାଇ ତଥା ମାଳମଣି ଦେବୀଙ୍କ ଜାମାତା ବିଶ୍ୱମ୍ଭର

ଦେବ ବିଭିନ୍ନ ସ୍ଥାନକୁ ଯାଇ ମକଦ୍ଦମା କଥା ବୁଝାବୁଝି କରୁଥିଲେ । ଏ ଦୁହେଁ ନୀଳମଣି ଦେବୀଙ୍କୁ ପ୍ରବର୍ତ୍ତାଇ ହିଁ ଏସବୁ ମାଲି ମକଦ୍ଦମା ସୃଷ୍ଟି କରିଥିଲେ ।

ପ୍ରିଭି କାଉନସିଲ ମାନ୍ଦ୍ରାଜ ହାଇକୋର୍ଟ ରାୟକୁ ରଦ କରଦେଇ ନିମ୍ନ ଅଦାଲତ ନିଷ୍ପତ୍ତିକୁ କାଏମ ରଖିଲେ । ଫଳରେ ବୀରବରମଦେବ ବର୍ମା ନିଃସ୍ୱ ହୋଇ ପଡ଼ିଥିଲେ । ତାଙ୍କର ମାଡ଼ଗୁଲ ରାଜାଙ୍କୁ ପୋଷ୍ୟପୁତ୍ର ହେବା ନୋହିଲା । ବ୍ରିଟିଶ୍ ସରକାର ଉକ୍ତ ରାଜ୍ୟକୁ ରାଣୀ ସୀତାଦେବୀଙ୍କ ହାତରେ ଅର୍ପଣ କରିଥିଲେ ଏବଂ ଏକମାତ୍ର ଉତ୍ତରାଧିକାରିଣୀ ଥିଲେ ନୀଳମଣି ଦେବୀଙ୍କ କନ୍ୟା ଆମ୍ନି ଦେବୀ । ଏ ମଧ୍ୟରେ ନୀଳମଣି ଦେବୀଙ୍କର ଦେହାନ୍ତ ହୋଇ ସାରିଥିଲା । ଆମ୍ନି ଦେବୀ ମାଡ଼ଗୁଲରେ ରହି ରାଜ୍ୟ ପରିଚାଳନା କଲେ ।

## ବିଶାଖାପାଟଣାରେ ଅବସ୍ଥାନ

ବୀରବରମଦେବ ବର୍ମା ମାଡ଼ଗୁଲର ନାବାଳକ ରାଜାଭାବେ ବିଶାଖାପାଟଣାରେ ଶିକ୍ଷା ଗ୍ରହଣ କରୁଥିଲେ । ଇଂରାଜୀ ପାଠ୍ୟ ସମେତ ତାଙ୍କୁ ପ୍ରଶାସନିକ ଶିକ୍ଷା ମଧ୍ୟ ଏ ସମୟରେ ଦିଆଯାଇଥିଲା । କିନ୍ତୁ ପ୍ରିଭି କାଉନସିଲ ରାୟ ଫଳରେ ମାଡ଼ଗୁଲ ରାଜ୍ୟ ସହିତ ତାଙ୍କର ସମ୍ପର୍କ ଛିନ୍ନ ହେଲା । ଏହାପରେ ବି ସେ ଆଉ ବିଶାଖାପାଟଣା ଛାଡ଼ିଲେ ନାହିଁ । କାରଣ ନଗରୀ କଟକରେ ବାପା ମାଆ କେହି ନଥିଲେ କିମ୍ବା ବୀରବରମ ଦେବ ବର୍ମାଙ୍କର ନିଜ ଗାଁ ଘର ବୋଲି ସେମିତି କେଉଁଠି କିଛି ନଥିଲା । ତେଣୁ ସେ ବିଶାଖାପାଟଣାକୁ ହିଁ ନିଜର କର୍ମଭୂମି ବୋଲି ଆଦରି ନେଲେ । କିନ୍ତୁ ଏତେ ବଡ଼ ସହରରେ ଚଳିବା ପାଇଁ ସେମିତି କିଛି ନିର୍ଦ୍ଦିଷ୍ଟ ଆୟ ନଥିଲା ।

ବୀରବରମଦେବ ବର୍ମା ମାସିକ ବୃତ୍ତିପାଇଁ ଜୟପୁର ରାଜା ରାମଚନ୍ଦ୍ରଦେବ (୩ୟ)ଙ୍କୁ ଆବେଦନ କଲେ । କିନ୍ତୁ ଏ ଆବେଦନର ବିଚାର ହେବା ପୂର୍ବରୁ ଖ୍ରୀ: ୧୮୮୯ରେ ହିଁ ରାଜାଙ୍କର ଦେହାନ୍ତ ହୋଇଗଲା । ତାଙ୍କର ପୁତ୍ର ବିକ୍ରମଦେବ (୩ୟ) ନାବାଳକ ଥିଲେ । ଏଣୁ ରାଜ୍ୟ କୋର୍ଟ ଆଫ୍ ଓ୍ୱାର୍ଡ଼ସ ଅଧୀନରେ ରହିଲା । ବିଶାଖାପାଟଣାଠାରେ ବୀରବରମଦେବ ବର୍ମାଙ୍କର ଶୋଚନୀୟ

ଅବସ୍ଥା ହୃଦୟଙ୍ଗମ କରି ଓ୍ୱାର୍ଡ଼ସ ଏଜେଣ୍ଟ୍ ଟେଲର ସାହେବ ମାସିକ ୩୫୦ ଟଙ୍କା ବୃତ୍ତି ମଞ୍ଜୁର କଲେ । ବିକ୍ରମଦେବ ବର୍ମା ଏହି ବୃତ୍ତି ଟଙ୍କାରେ ନିଜର ଗୁଜରାଣ ମେଣ୍ଟାଇଲେ ।

ଜୟପୁର ରାଜ ବଂଶୋଦ୍‌ଭବ ହୋଇ ମଧ୍ୟ ବିକ୍ରମଦେବ ବର୍ମା ସେହି ପରିବାରର କାହାରିକୁ ଚିହ୍ନି ନଥିଲେ ଏବଂ ଜୟପୁର କେବେ ଦେଖି ନଥିଲେ । ଏଣୁ ଖ୍ରୀ: ୧୮୮୯ରେ ସେ ବିଶାଖାପାଟଣାଠାରୁ ଜୟପୁର ଗଲେ । ବିଧବା ବଡ଼ମାଆ ଓ ନାବାଳକ ଭାଇ ବିକ୍ରମଦେବ (୩ୟ)ଙ୍କୁ ଦେଖିଲେ । ଏତେବେଳଯାଏଁ ବିକ୍ରମଦେବ ବର୍ମା ନିଜ ନାମ ଶେଷରେ 'ବର୍ମା' ଶବ୍ଦ ବ୍ୟବହାର କରି ନଥିଲେ । କିନ୍ତୁ ବଂଶ ପରମ୍ପରା ଅନୁଯାଇ ଜୟପୁର ରାଜା ବିକ୍ରମଦେବ (୩ୟ) ଭାବେ ଘୋଷିତ ହେବା ଓ ସେ ବିକ୍ରମଦେବ (ବର୍ମା)ଙ୍କ ସମସାମୟିକ ଥିବା ଯୋଗୁଁ ସ୍ୱଇଚ୍ଛାରେ ନିଜନାମ ଶେଷରେ 'ବର୍ମା' ଶବ୍ଦ ବ୍ୟବହାର କଲେ । ନିଜ ପିତୃପୁରୁଷଙ୍କ ଭିଟାମାଟି ଜୟପୁର ପ୍ରତି ବିକ୍ରମଦେବ ବର୍ମାଙ୍କର ମମତା ବହୁଳ ଭାବେ ଉଜ୍ଜୀବିତ ହୋଇଥିଲା ଏବଂ ବଣପାହାଡ଼ଘେରା ଏହି ରାଜ୍ୟର ପ୍ରାକୃତିକ ଶୋଭା ତାଙ୍କୁ ଆକର୍ଷିତ କରିଥିଲା । ତଥାପି ମାତ୍ର କେଇଟି ଦିନ ପରେ ସେ ପୁଣି ବିଶାଖାପାଟଣା ଫେରି ଆସିଥିଲେ ।

ନିଜର ବାପା, ମାଆ, ଭାଇ, ଭଉଣୀ କେହି ନଥିବା ଯୋଗୁଁ ବିକ୍ରମଦେବ ବର୍ମା ଜୟପୁର ରାଜପରିବାରରେ ଥିବା ବଡ଼ମାଆ ଓ ବଡ଼ବାପାଙ୍କ ପୁଅକୁ ନିଜର ମନେକରି ସେଠାକୁ ଯାଇଥିଲେ । କିନ୍ତୁ ସେଠାରେ ସେ ସେଭଳି କୌଣସି ସୌହାର୍ଦ୍ଦ୍ୟପୂର୍ଣ୍ଣ ବ୍ୟବହାର ପାଇଲେ ନାହିଁ । ବଡବାପା ଓ ଅନ୍ୟଜଣେ ପିତୃବ୍ୟଙ୍କ ଶତ୍ରୁତା ଆଚରଣ ଯୋଗୁଁ ବିକ୍ରମଦେବ ବର୍ମାଙ୍କର ମାତୃକୁଳରେ ଦତ୍ତପୁତ୍ର ହେବା ବିଫଳ ହେଲା । ତଥାପି ସେ ଏହାକୁ ପଛରେ ପକାଇ ବଡବାପାଙ୍କ ମୃତ୍ୟୁପରେ ଅନ୍ତତଃ ସମ୍ପର୍କ ପୁନଃ ସ୍ଥାପନ ହେବା ଆଶାକରି ଜୟପୁର ଯାଇଥିଲେ । କିନ୍ତୁ ସେଠାରୁ ଫେରିବା ପୂର୍ବରୁ ବଡ଼ବାପାଙ୍କ ପୁଅ ଯୁବରାଜ ବିକ୍ରମ ମଧ୍ୟ ଶତ୍ରୁତା ଆଚରଣ କରିବା ସୂଚନା ପାଇଥିଲେ ।

ପ୍ରାୟ ୨୮ ବର୍ଷ ବୟସ ଯାଏଁ ବୀରମଦେବ ବର୍ମାଙ୍କର ବ୍ରତୋପନୟନ ହୋଇ ନଥିଲା । ଏ ସମ୍ପର୍କରେ ଚିନ୍ତା କରିବାପାଇଁ ମଧ୍ୟ କେହି ଅଭିଭାବକ ନଥିଲେ । ମାଡ଼ଗୁଲ ରାଜ୍ୟ ପରିଚାଳନା ଦାୟିତ୍ୱରେ ଥିବା ଆମ୍ପିଦେଵୀ ଖ୍ରୀ: ୧୯୯୩ରେ ବୀରମଦେବ ବର୍ମାଙ୍କୁ ନିଜ ପାଟକୁ ଡ଼କାଇ ବ୍ରତ କରାଇଲେ । ସେ ନିଜେ ବ୍ୟକ୍ତିଗତ ଭାବେ ସମସ୍ତ ଖର୍ଚ୍ଚ ବହନ କରିଥିଲେ । ବୀରମ ଗରୀବ ନିସ୍ୱ ଥାଇ ମଧ୍ୟ ଖୁବ୍ ମାତିନିଷ୍ଠ ଥିଲେ । ବ୍ରତଭୋଜରେ ମାଂସ ରାନ୍ଧିବାପାଇଁ ବଧ କରିବା ସକାଶେ ଅନେକ ପଶୁପକ୍ଷୀ ସଂଗ୍ରହ କରି ବାନ୍ଧି ରଖା ଯାଇଥିଲା । ସେହି ପଶୁପକ୍ଷୀଙ୍କୁ ପ୍ରଥମେ ମୁକ୍ତ କରିବା ପରେ ସେ ବ୍ରତହେବେ; ନଚେତ ଜମା ବ୍ରତବେଦୀକୁ ଯିବେ ନାହିଁ ବୋଲି ଘୋଷଣା କଲେ । ଏଣୁ ସଂଗୃହୀତ ସବୁ ପଶୁପକ୍ଷୀଙ୍କୁ ଛାଡ଼ି ଦିଆଗଲା ଓ ବ୍ରତଟିରେ ନିରାମିଷ ଭୋଜ ହେଲା । ବ୍ରତୋତ୍ସବ ପରେ ବୀରମଦେବ ବର୍ମା ବିଶାଖା- ପାଟଣା ଫେରିଥିଲେ ।

## ସାହିତ୍ୟ ସାଧନା ଓ ସଂଗଠନ

ମାଡ଼ଗୁଲ ରାଜ୍ୟ ସହିତ ସମସ୍ତ ବନ୍ଧନ ଛିନ୍ନ ଓ ଜୟପୁର ଯାଇ ଫେରିବା ପରେ ବୀରମଦେବ ବର୍ମା ବିଶାଖାପାଟଣାଠାରେ ନିଜକୁ ସାହିତ୍ୟ ସାଧନାରେ ନିୟୋଜିତ କଲେ । ନୈରାଶ୍ୟ ଓ ମନସ୍ତାପରୁ ମୁକ୍ତି ପାଇଁ ଏହା ତାଙ୍କ ପକ୍ଷେ ସେତେବେଳେ ଥିଲା ଅପରିହାର୍ଯ୍ୟ ଅବଲମ୍ବନ । ବାଲ୍ୟକାଳରୁ ଅଧ୍ୟୟନରେ ଆଗ୍ରହ, ଜ୍ଞାନପିପାସା ଓ ସାହିତ୍ୟ ପ୍ରତି ଶ୍ରଦ୍ଧା ଏ କ୍ଷେତ୍ରରେ ତାଙ୍କୁ ଅପାର ଆନନ୍ଦ ଦେଇଥିଲା । ସେ ଓଡ଼ିଆ, ତେଲୁଗୁ ଏବଂ ସଂସ୍କୃତ ସାହିତ୍ୟ ଅଧ୍ୟୟନ କରି ନିଜେ ବହୁ ଜ୍ଞାନର ଅଧିକାରୀ ହୋଇପାରିଥିଲେ । ସ୍ଥାନୀୟ ପଣ୍ଡିତମାନେ ତାଙ୍କ ସହିତ ଶାସ୍ତ୍ର ଆଲୋଚନାରେ ଅଂଶଗ୍ରହଣ କଲେ । ବେଦ ଉପନିଷଦ, ଗୀତା ଭାଗବତ, ରାମାୟଣ ମହାଭାରତର ନିୟମିତ ଆଲୋଚନା ଅବ୍ୟାହତ ରହିଲା । ମାତ୍ର କେତୋଟି ବର୍ଷ ମଧ୍ୟରେ ବୀରମଦେବ ବର୍ମାଙ୍କ ଘର ଏକ ବାଣୀତୀର୍ଥ ବିବେଚିତ ହେଲା ।

ସଂସ୍କୃତ କାବ୍ୟନାଟକର ମାତିନିୟମ ପ୍ରକାରରେ ବୀରମଦେବ ବର୍ମା ତେଲୁଗୁ ଏବଂ ଓଡ଼ିଆ ଭାଷାରେ ସାହିତ୍ୟ ସୃଷ୍ଟି ଆରମ୍ଭ କଲେ । ଗମ୍ଭୀର

ଚନ୍ଦ୍ରାପ୍ରସୂତ ତାଙ୍କର ପ୍ରବନ୍ଧ ଓ ସାହିତ୍ୟ ସମାଲୋଚନାମାନ ତେଲୁଗୁ ଭାଷାର ପ୍ରସିଦ୍ଧ ପତ୍ରିକା ଭାରତୀ, ସରସ୍ୱତୀ, ଗୃହଲକ୍ଷ୍ମୀ ଆଦି ପତ୍ରିକାରେ ପ୍ରକାଶ ପାଇଲା । ସେଣେ ଓଡ଼ିଆ ଭାଷାର ପ୍ରବନ୍ଧ ସବୁ 'ଉତ୍କଳ ସାହିତ୍ୟ' ଓ 'ମୁକୁର' ପତ୍ରିକାରେ ପ୍ରକାଶିତ ହେଲା । ଏଣୁ ବଳରାମଦେବ ବର୍ମାଙ୍କ ସୁନାମ ଉଭୟ ଆନ୍ଧ୍ର ଭାଷାଭାଷୀ ଅଞ୍ଚଳ ଓ ପ୍ରାକୃତିକ ଓଡ଼ିଶାରେ ପ୍ରସାରିତ ହେଲା । ଲେଖାଗୁଡ଼ିକର ଉଚ୍ଚମାନ ତାଙ୍କୁ ଉଭୟ ଭାଷାର ବିଶିଷ୍ଟ ସାହିତ୍ୟିକ ବିବେଚିତ କଲା ।

ପ୍ରାଚୀନ ଓଡ଼ିଆ ଭାଷା ସାହିତ୍ୟର ଗଭୀର ଅଧ୍ୟୟନ ଯୋଗୁଁ ପରବର୍ତ୍ତୀ କାଳରେ ଏ ଭାଷାର ଦୁର୍ଦ୍ଦଶା ବଳରାମଦେବ ବର୍ମାଙ୍କ ମନରେ ଗଭୀର ରେଖାପାତ କରିଥିଲା । ଓଡ଼ିଆଙ୍କ ପାଇଁ ସ୍ୱତନ୍ତ୍ର ପ୍ରଦେଶଟିଏ ନଥିଲା । ପଡ଼ୋଶୀ କେତେଗୋଟି ରାଜ୍ୟରେ ଛିନ୍ନ ବିଛିନ୍ନ ହୋଇ ରହିଥିବା ଓଡ଼ିଆଙ୍କ ଭାଷା ସଂସ୍କୃତି କିଭଳି ବେଳୁବେଳ ବିଲୋପ ହେବାକୁ ଯାଉଛି, ତାହା ସେ ମର୍ମେମର୍ମେ ଅନୁଭବ କରିଥିଲେ । ତେଲୁଗୁ ଅଧ୍ୟୁଷିତ ପରଳାଖେମୁଣ୍ଡିରେ ଅସଂଖ୍ୟ ଓଡ଼ିଆ ଅସଂଗଠିତ ଭାବେ ହୀନମନ୍ୟତା ଭିତରେ କାଳାତିପାତ କରୁଥିବା ଜାଣି ଏହାର ପ୍ରତିକାର ପାଇଁ ସେ ଉଦ୍ୟମ ଆରମ୍ଭ କଲେ । ତାଙ୍କର ନେତୃତ୍ୱରେ 'ଓଡ଼ିଆ ସମାଜ' ଗଠିତ ହେଲା । ଓଡ଼ିଆଙ୍କ ଭାଷା ଓ ସଂସ୍କୃତି ସୁରକ୍ଷା ପାଇଁ ଏ ଅନୁଷ୍ଠାନ ଅହରହ ଉଦ୍ୟମ କଲା ।

ପରଳାଖେମୁଣ୍ଡିଠାରେ ସଭାସମିତି କରିବା ପାଇଁ 'ଜଗନ୍ନାଥ ହଲ' ରହିଥିଲା । ଏଠାରେ ବେଳେବେଳେ ତେଲୁଗୁ ନାଟକ ମଞ୍ଚସ୍ଥ ହେଉଥିଲା । ଏଣୁ ସଂଗଠିତ ଓଡ଼ିଆଙ୍କ ଦ୍ୱାରା ଓଡ଼ିଆ ନାଟକ ଏହିଠାରେ ମଞ୍ଚସ୍ଥ କରାଇବା ଉଦ୍ଦେଶ୍ୟ ନେଇ ବଳରାମଦେବ ବର୍ମା ସଂଗୀତବହୁଳ 'ରାଧାମାଧବ ନାଟକ' ରଚନା କଲେ ଏବଂ ମଞ୍ଚସ୍ଥ ମଧ୍ୟ କରାଇଲେ । ଅତ୍ୟନ୍ତ ସଫଳତାର ସହ ଏ ନାଟକ ମଞ୍ଚସ୍ଥ ହୋଇପାରିବା ଯୋଗୁଁ ଓଡ଼ିଆଙ୍କ ମନରେ ଉତ୍ସାହ ସୃଷ୍ଟି ହେଲା ଏବଂ ରାଧାମାଧବ ନାଟକ ଲୋକପ୍ରିୟତା ହାସଲ କଲା । ଏହି ନାଟକ ବାରମ୍ବାର ମଞ୍ଚସ୍ଥ ହେବାକୁ ଲାଗିଲା ଓ ବହିଟି ଖ୍ରୀ: ୧୮୯୭ରେ କଟକ ପ୍ରିଣ୍ଟିଙ୍ଗ୍ କମ୍ପାନୀଦ୍ୱାରା ମୁଦ୍ରିତ ହୋଇ ପ୍ରକାଶ ପାଇଲା ।

ଏହା ବ୍ୟତୀତ ସେଠାରେ ଅନ୍ଧ୍ରର ଅନେକ ଓଡ଼ିଆ ନାଟକ ମଞ୍ଚସ୍ଥ ହୋଇଥିଲା ଏବଂ ଓଡ଼ିଆଙ୍କ ମନରେ ସାଂସ୍କୃତିକ ଜାଗରଣ ସୃଷ୍ଟି ହୋଇ ଥିଲା । ତେଲୁଗୁ ଅଧୁଷିତ ଅଞ୍ଚଳ ମଧ୍ୟରେ ଥାଇ, ତେଲୁଗୁ ପଣ୍ଡିତ ତଥା ସଂସ୍କୃତିବିତ୍‌ମାନଙ୍କ ସଂସ୍ପର୍ଶରେ ଆସି ମଧ୍ୟ ବିକ୍ରମଦେବ ବର୍ମାଙ୍କର ଚାଲିଚଳନ, ଆଚରଣ, ଖାଦ୍ୟପେୟ ଓ ପୋଷାକ ପରିଧାନରେ ଓଡ଼ିଆତ୍ୱ ହିଁ ପରିପ୍ରକାଶ ହେଉଥିଲା । ଆନ୍ଧ୍ର ସଂସ୍କୃତି ସଂପର୍କରେ ସେ ଗଭୀର ଜ୍ଞାନ ଆହରଣ କରିଥିଲେ ବି ତାଙ୍କୁ ସେ ସଂସ୍କୃତି ସ୍ପର୍ଶ କରିପାରି ନଥିଲା । ଏ ସମୟ ମଧ୍ୟରେ ସେ ତେଲୁଗୁରେ ଶ୍ରୀନିବାସ କଲ୍ୟାଣମ୍, ନାଗାର୍ଜୁନ ଚରିତମ୍ ଓ ମାନବଶ୍ରୀ ଚରିତମ୍ ନାଟକ ଲେଖି ମଞ୍ଚସ୍ଥ କରାଇଥିଲେ । ଓଡ଼ିଆ ଓ ତେଲୁଗୁ ନାଟକ ନିୟମିତ ମଞ୍ଚସ୍ଥପାଇଁ 'ଜଗନ୍ନାଥ ହଲ୍' ଠାରେ ବିକ୍ରମଦେବ ବର୍ମା ଏକ ସ୍ଥାୟୀ ରଙ୍ଗମଞ୍ଚ ପ୍ରତିଷ୍ଠା କରିଥିଲେ । ଏଥିପାଇଁ ସେ ନିଜର ସୀମିତ ସମ୍ବଳ ମଧ୍ୟରୁ ପ୍ରାୟ ଦଶହଜାର ଟଙ୍କା ବ୍ୟୟ କରିଥିଲେ ।

ଓଡ଼ିଆ ଶିକ୍ଷା ପ୍ରସାରପାଇଁ ବିକ୍ରମଦେବ ବର୍ମା ବିଶାଖାପାଟଣାର ସ୍କୁଲଗୁଡିକରେ ନିଜ ଉଦ୍ୟମରେ ଓଡ଼ିଆ ଶିକ୍ଷକ ନିଯୁକ୍ତ ଏବଂ ଓଡ଼ିଆରେ ଶିକ୍ଷାଦାନ ବ୍ୟବସ୍ଥା କରାଇ ପାରିଥିଲେ । ଗରିବ ମେଧାବୀ ଓଡ଼ିଆ ଛାତ୍ରମାନଙ୍କୁ ସେ ବୃତ୍ତି ପ୍ରଦାନ କରି ଓଡ଼ିଆ ଶିକ୍ଷା ପ୍ରସାରରେ ସହାୟତା ଯୋଗାଇଥିଲେ । ଏହି ସମୟ ମଧ୍ୟରେ ବିକ୍ରମଦେବ ବର୍ମା କେତେକ ପ୍ରାଚୀନ ତେଲୁଗୁ କାବ୍ୟ ନାଟକ ଉପରେ ଗବେଷଣାତ୍ମକ ଟୀକା ଲେଖିଥିଲେ ଓ ସଂସ୍କୃତରେ ଅନେକ ଶ୍ଳୋକ ରଚନା କରିଥିଲେ । ସେ ପ୍ରତିଦିନ ପ୍ରାୟ ଆଠଘଣ୍ଟା ସାହିତ୍ୟ ସାଧନାରେ ନିମଗ୍ନ ରହୁଥିଲେ । ଆନ୍ଧ୍ରୋତ୍କଳ ସମଦୃଷ୍ଟି ତାଙ୍କୁ ଉଭୟ ଭାଷାଭାଷୀଙ୍କ ମଧ୍ୟରେ ଉଚ୍ଚ ସମ୍ମାନର ଅଧିକାରୀ କରିଥିଲା ।

## ଉତ୍କଳ ସମ୍ମିଳନୀ କାର୍ଯ୍ୟ

ସମଗ୍ର ପ୍ରାକୃତିକ ଓଡ଼ିଶାର ଅଧିବାସୀଙ୍କୁ ଏକଶାସନାଧୀନ କରିବା ପାଇଁ ଦାବୀ ତଥା ଓଡ଼ିଆ ଭାଷା ସଂସ୍କୃତିର ସୁରକ୍ଷା ଓ ଉନ୍ନତି ଉଦ୍ଦେଶ୍ୟରେ 'ଉତ୍କଳ ସମ୍ମିଳନୀ'ର ପରିକଳ୍ପନା । ଏଣୁ ଉଦ୍‌ଯୋକ୍ତାଗଣ ଖଲିକୋଟ ରାଜା ହରିହର ମର୍ଦ୍ଦରାଜ ଦେଓ, ଉତ୍କଳ ଗୌରବ ମଧୁସୂଦନ ଦାସ, ଗୌରୀଶଙ୍କର

ରାଯ୍, କନକା ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜଦେବ ପ୍ରମୁଖ ସ୍ୱାଗତକମାନେ, ବହୁପୂର୍ବରୁ ଏ କ୍ଷେତ୍ରରେ କାମ କରୁଥିବା ବଶାଖାପାଟଣାର ବୀରମଦେବ ବର୍ମାଙ୍କ ସହିତ ଯୋଗାଯୋଗ ସ୍ଥାପନ କରିଥିଲେ । ଖ୍ରୀ: ୧୮୦୩ ଏପ୍ରିଲ ମାସ 'ଗଞ୍ଜାମ ସମ୍ମିଳନୀ'ର ଆଶାତୀତ ସଫଳତା ପରେ ସେହିବର୍ଷ ଡ଼ିସେମ୍ବର ଶେଷରେ କଟକଠାରେ 'ଉତ୍କଳ ସମ୍ମିଳନୀ' ଗଠିତ ହୋଇ ପ୍ରଥମ ଅଧିବେଶନ ଅନୁଷ୍ଠିତ ହେଲା । ସମଗ୍ର ଓଡ଼ିଆ ଭାଷାଭାଷୀ ଅଞ୍ଚଳ ତଥା ଓଡ଼ିଆ ଅନୁଷ୍ଠାନଗୁଡ଼ିକର ପ୍ରତିନିଧିମାନେ ଏ ଅଧିବେଶନରେ ଯୋଗ ଦେଇଥିଲେ । ବିଶାଖାପାଟଣା 'ଓଡ଼ିଆ ସମାଜ'ର କେତେକ ପ୍ରତିନିଧିଙ୍କୁ ସାଙ୍ଗରେ ନେଇ ଏ ଅନୁଷ୍ଠାନର ସଭାପତି ବୀରମଦେବ ବର୍ମା କଟକଠାରେ ଉତ୍କଳ ସମ୍ମିଳନୀ ପ୍ରଥମ ଅଧିବେଶନରେ ଯୋଗ ଦେଇଥିଲେ । ସେଠାରେ ପ୍ରତିନିଧିମାନଙ୍କ ଅବସ୍ଥାନ ନିମନ୍ତେ ବହୁ ବଡ଼ବଡ଼ କୋଠା ଭଡ଼ାରେ ନିଆ ଯାଇଥିଲା । ଏସବୁ ସମେତ ବିଶିଷ୍ଟ ବ୍ୟକ୍ତିମାନେ କଟକର କେତେକ ପରିବାର ସହ ରହିବା ପାଇଁ ସ୍ଥିର ହୋଇଥିଲା । ସମ୍ମିଳନୀ କର୍ତ୍ତୃପକ୍ଷଙ୍କ ନିଷ୍ପତ୍ତି ପ୍ରକାରେ ବୀରମଦେବ ବର୍ମା, କଟକଠାରେ ସେତେବେଳେ ରହୁଥିବା ବ୍ୟାସକବି ଫକୀରମୋହନ ସେନାପତିଙ୍କ ବସାଘରେ ତାଙ୍କ ସହିତ ରହିଥିଲେ । ଏ ଦୁହେଁ ସାହିତ୍ୟ କ୍ଷେତ୍ରରେ ବହୁପୂର୍ବରୁ ପରସ୍ପର ସମ୍ପର୍କ ସ୍ଥାପନ କରି ସାରିଥିଲେ । ଏଣୁ ଦୁଇବନ୍ଧୁ ଏକତ୍ର ରହିବାରେ ଉଭୟେ ଆନନ୍ଦିତ ହୋଇଥିଲେ ।

ଠିକ୍ ସେତେବେଳକୁ ସମ୍ବଲପୁର କୋର୍ଟ କଚେରୀଗୁଡ଼ିକରେ ଓଡ଼ିଆ ଭାଷା ପୁନଃ ପ୍ରଚଳିତ ହୋଇଥିଲା । ଏଣୁ ବ୍ରିଟିଶ ସରକାରୀ କର୍ତ୍ତୃପକ୍ଷଙ୍କୁ ଏଥି ନିମନ୍ତେ ଧନ୍ୟବାଦ ଜଣାଇବା ସକାଶେ ସମ୍ମିଳନୀର ନିର୍ଦ୍ଦେଶ ପ୍ରକାରେ ବୀରମଦେବ ବର୍ମା ଏକ ପ୍ରସ୍ତାବ ଆଗତ କରିଥିଲେ । ଏଥିରେ ବୀରମଦେବ ବର୍ମା କହିଥିଲେ "ଚିରକାଳରୁ ସ୍ଥାୟୀ ହୋଇଥିବା ଉତ୍କଳ ଭାଷା ସମ୍ବଲପୁର ଅଞ୍ଚଳ ସରକାରୀ ଅଦାଲତମାନଙ୍କରୁ ଉଠି ଯାଇଥିଲା—ଏହା ଆପଣମାନଙ୍କୁ ଅଗୋଚର ନାହିଁ । ଯଦି ସେପରି ଘଟିଥାନ୍ତା ନିଶ୍ଚୟ ସେ ଅଞ୍ଚଳରେ ଆଜ ଓଡ଼ିଆ ଭାଷା ଚଳନ୍ତା ନାହିଁ । କାରଣ— କେତେକ ସାହିତ୍ୟାନୁଭବରେ କୌଣସି ଭାଷା ଗଠିତ ହୋଇଥିବାର ପ୍ରାପ୍ତ ଦେଖାଯାଏ ନାହିଁ । ବର୍ତ୍ତମାନ ବିଦ୍ୟାଭିବୃଦ୍ଧି ତହିଁର ପରିପୂରକ ଅଟଇ ।

ମାନ୍ଦ୍ରାଜ ବିଶ୍ୱବିଦ୍ୟାଳୟରେ ଦେଶ ପ୍ରଚଳିତ ଭାଷାମାନ ଅର୍ଥାତ୍ ତେଲୁଗୁ, ଦ୍ରାବିଡ଼, କନ୍ନଡ଼ ପ୍ରଭୃତି ଭାଷାମାନ ବ୍ୟବହୃତ ହେଉଥିବାରୁ ସେଠା ଛାତ୍ରମାନେ ଉକ୍ତ ଭାଷା ନପଢ଼ିଲେ ଚଳେ ନାହିଁ । ଏହି କାରଣରୁ ଯେ ଅଞ୍ଚଳରେ ସେହି ସେହି ଭାଷାମାନଙ୍କର ଉନ୍ନତି ହେଉଛି । ଏହି ବିଶ୍ୱବିଦ୍ୟାଳୟରେ ଓଡ଼ିଆ ପ୍ରଭୃତି ଦେଶୀୟ ଭାଷାମାନ ଉଚ୍ଚଶ୍ରେଣୀ ଛାତ୍ରମାନଙ୍କୁ ଆବଶ୍ୟକ ହେଉଥିବାରୁ ଏଠା ନାବାଳକମାନେ ଦେଶୀୟ ଭାଷା ପଠନରେ ହେଳା କରୁଛନ୍ତି । ଯଦି ଓଡ଼ିଆ ଭାଷା ସମ୍ବଲପୁର କଚେରୀମାନଙ୍କରୁ ଉଠି ଯାଇ ଥାଆନ୍ତା, ପଠନ ବିଷୟ ଈଶ୍ୱର ଜାଣନ୍ତି—ଓଡ଼ିଆ ସମ୍ଭାଷଣ ସୁଦ୍ଧା ଲୋପ ହୋଇ ଯାଆନ୍ତା । ଏ ସାନଦୁଃଖୀ ଉତ୍କଳବାସୀଙ୍କଠାରେ କୃପାକରି ସମ୍ବଲପୁର ଅଞ୍ଚଳରେ ଓଡ଼ିଆକୁ ପୁନଶ୍ଚ ରାଜକୀୟ ଭାଷା ସ୍ୱରୂପ ସଂସ୍ଥାପନ କରିବା ହେତୁ, ମାନନୀୟ ଶ୍ରୀ ବଙ୍ଗଳା ଗ୍ଭର୍ଣ୍ଣମେଣ୍ଟଙ୍କୁ ଧନ୍ୟବାଦ ନିମିତ୍ତ ଏବଂ ଉକ୍ତ ସମ୍ବାଦ ପ୍ରାଇଭେଟ ସେକ୍ରେଟେରୀଙ୍କ ଦ୍ୱାରା ସେ ମହୋଦୟଙ୍କୁ ଜଣାଇବା ନିମିତ୍ତ ମୁଁ ପ୍ରସ୍ତାବ କରୁଅଛି ।" ସମ୍ମିଳନୀରେ ଏହାକୁ ଅନୁମୋଦନ କରିଥିଲେ ସମ୍ବଲପୁରର ନେତା ଚନ୍ଦ୍ରଶେଖର ବେହେରା ।

ଏ ଅଧିବେଶନ ପରଠାରୁ ବଣାଖାପାଟଣା ଅଞ୍ଚଳରେ ଉତ୍କଳ ସମ୍ମିଳନୀର ସଂଗଠନ କାମ ବିକ୍ରମଦେବ ବର୍ମା ଅତ୍ୟନ୍ତ ଦକ୍ଷତାର ସହିତ କରିଥିଲେ ଏବଂ ପ୍ରତି ଅଧିବେଶନରେ ଏଠାରୁ ପ୍ରତିନିଧି ଯୋଗ ଦେବା କାର୍ଯ୍ୟ ଅବ୍ୟାହତ ରଖିଥିଲେ ।

## ବିବାହ ଓ ପାରିବାରିକ ଜୀବନ

ବିକ୍ରମଦେବ ବର୍ମାଙ୍କର ବିବାହ ୩୯ ବର୍ଷ ବୟସରେ ଖ୍ରୀ: ୧୯୦୮ ଜ୍ୟେଷ୍ଠ ଶୁକ୍ଳ ଦ୍ୱାଦଶୀ ତିଥିରେ ଅନୁଷ୍ଠିତ ହେଲା । ନିଜର ଆତ୍ମୀୟ ଅଭିଭାବକ କେହି ଏ ସମ୍ପର୍କରେ ଚିନ୍ତା କରିବା ପାଇଁ ନଥିବା ଯୋଗୁଁ ସେ ଏଯାଏଁ ଅବିବାହିତ ରହିଥିଲେ । ଏ ବିବାହ ଉତ୍ସବ ମଧ୍ୟ ବିଶାଖାପାଟଣା-ଠାରେ ଅନୁଷ୍ଠିତ ହୋଇ ନଥିଲା । ବିକ୍ରମଦେବ ବର୍ମା ଯଦିଓ ବଲାଙ୍ଗୀର ପାଟଣା ରାଜ ପରିବାରରେ ବିବାହ ହେଲେ—ଉତ୍ସବ କିନ୍ତୁ ନବରଙ୍ଗପୁର

ରାଜନଅରରେ ଅନୁଷ୍ଠିତ ହୋଇଥିଲା । ନବରଙ୍ଗପୁରର ହିଁ ଛୋଟ ରାଣୀ ଏ ବିବାହସଂପନ୍ନ କରାଇଥିଲେ ।

ନବରଙ୍ଗପୁର ଜୟପୁର ରାଜ୍ୟ ଅନ୍ତର୍ଗତ ଏକ କରଦ ରାଜ୍ୟ ଥିଲା । ସେହି କ୍ଷୁଦ୍ର ନବରଙ୍ଗପୁର ରାଜ୍ୟର ରାଜା ଚୈତନ୍ୟ ଦେବଙ୍କର ଖ୍ରୀ: ୧୮୭୭ ରେ ପରଲୋକ ହୋଇ ଯାଇଥିଲା । ଏହା ପରେ ତାଙ୍କର ଦୁଇ ବିଧବା ରାଣୀ ରାଜ୍ୟ ପରିଚାଳନା କରୁଥିଲେ । ନବରଙ୍ଗପୁର ରାଜା ଜୟପୁର ରାଜବଂଶୀୟ ହିଁ ଥିଲେ । କିନ୍ତୁ ଜୟପୁର ରାଜା ବିକ୍ରମଦେବ (୩ୟ) ସାବାଳକ ହେବା ପରେ ଖ୍ରୀ: ୧୮୯୭ ରେ ରାଣୀଦ୍ୱୟଙ୍କୁ ରାଜ୍ୟରୁ ବଞ୍ଚିତ କରି ନବରଙ୍ଗପୁରକୁ ନିଜ ରାଜ୍ୟରେ ମିଶାଇ ଦେଇଥିଲେ । ରାଣୀଦ୍ୱୟ ଅଦାଲତର ଆଶ୍ରୟ ନେଇ ଜୟଯୁକ୍ତା ହେଲେ ଏବଂ ଖ୍ରୀ: ୧୯୦୦ ରେ ପୁଣି ରାଜ୍ୟ ଫେର ପାଇଲେ । ଏହା ପରେ ବଡ଼ ରାଣୀଙ୍କର ତିରୋଧାନ ଘଟି ଯାଇଥିଲା ଓ ସାନରାଣୀ ନିଜେ ରାଜ୍ୟ ପରିଚାଳନା କଲେ । ବିଶାଖାପାଟଣା-ଠାରେ ସୁସାହିତ୍ୟିକ, ପଣ୍ଡିତପ୍ରବର ବିକ୍ରମଦେବ ବର୍ମାଙ୍କର ଦୁରବସ୍ଥା ଦେଖି ସେ ବେଳେବେଳେ ଆର୍ଥିକ ସାହାଯ୍ୟ ଦେଉଥିଲେ । ସେ ବଲାଙ୍ଗୀର ରାଜ ପରିବାରର କନ୍ୟା ଥିଲେ । ଏଣୁ ତାଙ୍କର ଜଣେ ଭାଇଙ୍କ ପୁତ୍ର ନିରାକାର ସିଂହଦେଓଙ୍କ ଝିଅ ହୀରାଦେବୀ ସହିତ ବିକ୍ରମଦେବ ବର୍ମାଙ୍କ ବିବାହ ଠିକ୍ କରିଥିଲେ । ସେ ନିଜେ ବିକ୍ରମଦେବ ବର୍ମାଙ୍କୁ ନବରଙ୍ଗପୁର ଡକାଇ ନେଇ ସେଠାରେ ବିବାହସଂପନ୍ନ କରିଥିଲେ । ରାଜକୀୟ ମହା ଆଡ଼ମ୍ବରରେ ବିବାହ ଉତ୍ସବ ଶେଷ ହେଲା । ଉତ୍ସବ ପରେ ନବଦମ୍ପତି ବିଶାଖାପାଟଣା ଆସି ଯାଇଥିଲେ ।

ନବରଙ୍ଗପୁର ରାଣୀଙ୍କ ସହିତ ଜୟପୁର ରାଜା ବିକ୍ରମଦେବ (୩ୟ)ଙ୍କ ଶତ୍ରୁତା ଥିବା ଯୋଗୁଁ ସେ ଏ ବିବାହକୁ ବିରୋଧ କରିଥିଲେ ଏବଂ ସେଠାରେ ବିବାହ ହେଲେ ମାସିକ ଭତ୍ତା ଟ ୩୫୦/— ବନ୍ଦ କରି ଦେବେ ବୋଲି ବିକ୍ରମଦେବ ବର୍ମାଙ୍କୁ ଧମକ ଦେଇଥିଲେ । କିନ୍ତୁ ଏ ଧମକକୁ କେହି ଗୁରୁତ୍ୱ ନଦେଇ ଉତ୍ସବାନୁଷ୍ଠାନ କରିଥିଲେ । ଏଣୁ ବିବାହ ପରେ ମାସିକ ଭତ୍ତା ସେ ବନ୍ଦ କରିଦେଲେ । ଏହା ବିରୁଦ୍ଧରେ ବିକ୍ରମଦେବ ବର୍ମା ମାସିକ ଆଠଶହ ଟଙ୍କା ଦାବୀ କରି, ଜୟପୁରଠାରେ ଅବସ୍ଥାପିତ ସରକାରୀ ଏଜେଣ୍ଟଙ୍କ ପାଖରେ

ଖ୍ରୀ: ୧୯୦୯ ପ୍ରାରମ୍ଭରେ ଆପତ୍ତି କଲେ । ଏଜେଣ୍ଟ ତାହା ମଞ୍ଜୁର କଲେ । କିନ୍ତୁ ଏ ମଞ୍ଜୁରୀ ବିରୁଦ୍ଧରେ ଜୟପୁର ରାଜା ମାନ୍ଦ୍ରାଜ ହାଇକୋର୍ଟରେ ଅପିଲ କଲେ । ମାନ୍ୟବର ହାଇକୋର୍ଟ ଅପିଲ ନାମଞ୍ଜୁର କରି ଏଜେଣ୍ଟଙ୍କ ଆଦେଶକୁ କାଏମ ରଖିଲେ । ଏଣୁ ରାଜା ବିକ୍ରମଦେବ (ଜୟପୁର) ପ୍ରିଭି କାଉନସିଲରେ ପୁଣି ଅପିଲ କଲେ ।

ମାସିକ ବୃତ୍ତି ବନ୍ଦ ହୋଇଯିବା ଯୋଗୁଁ ବିଶାଖାପାଟଣାଠାରେ ବିକ୍ରମଦେବ ବର୍ମା ଘୋର ଆର୍ଥିକ ସଙ୍କଟର ସମ୍ମୁଖୀନ ହେଲେ । ଏ ମଧ୍ୟରେ ଖ୍ରୀ: ୧୯୦୮ ରେ ମାନ୍ଦ୍ରାଜ ବିଶ୍ୱବିଦ୍ୟାଳୟ ତାଙ୍କର ତେଲୁଗୁ ପୁସ୍ତକ ଶ୍ରୀନିବାସ କଲ୍ୟାଣମ୍, ନାଗାର୍ଜୁନ ଚରିତମ୍ ଓ ମାନବଶାସ୍ତ୍ର ଚରିତମ୍ ତିନୋଟି ଏଫ୍. ଏ., ବି. ଏ. ଏବଂ ଏମ୍. ଏ. ଶ୍ରେଣୀର ପାଠ୍ୟ ମନୋନୀତ କଲେ । ଏଣୁ ବିକ୍ରମଦେବ ବର୍ମା ସେହି ବହିଗୁଡ଼ିକର ବିକ୍ରି ଉପରେ 'ରୟାଲଟି' ବାବଦକୁ କିଛି ଟଙ୍କା ପାଉଥିଲେ ।

ବିବାହର ଠିକ୍ ଦୁଇବର୍ଷ ପୂର୍ଣ୍ଣ ହେବା ପରେ ଖ୍ରୀ: ୧୯୧୦ ଆଷାଢ଼ ଶୁକ୍ଳ ଦ୍ୱାଦଶୀ ଦିନ ତାଙ୍କର ଏକ ଝିଅ ଜନ୍ମ ହେଲା । ବିକ୍ରମଦେବ ବର୍ମା ଝିଅର ନାମ ରଖିଲେ 'ମଣି' । ଝିଅଟିକୁ ବାଲ୍ୟକାଳରେ ହିଁ ସେ ଉତ୍ତମ ଶିକ୍ଷା ଦେବା ଆରମ୍ଭ କରି ଦେଇଥିଲେ । ପତ୍ନୀ ହୀରା ଦେବୀ ଜଣେ ବିଦୁଷୀ ଥିବା ଯୋଗୁଁ ତାଙ୍କର ବ୍ୟକ୍ତିତ୍ୱର ପ୍ରଭାବ ମଧ୍ୟ ଝିଅ ମଣି ପାଖରେ ପରିଲକ୍ଷିତ ହୋଇଥିଲା ।

ବିକ୍ରମଦେବ ବର୍ମାଙ୍କର ସାହିତ୍ୟ ସାଧନା ଓ ସଂଗଠନ କାର୍ଯ୍ୟ ଅବ୍ୟାହତ ରହିଥିଲା । ଅନେକ ପ୍ରବନ୍ଧ ଓ କବିତା ଓଡ଼ିଆ ପତ୍ରପତ୍ରିକାରେ ପ୍ରକାଶ ପାଇଥିଲା ଏବଂ 'ସରସ ଗୀତାବଳୀ' କବିତା ସଂକଳନ ଓ 'ଭଗବତ ଗୀତା ମହାତ୍ମ୍ୟ' ମୁଦ୍ରିତ ହୋଇଥିଲା । ଏହା ବ୍ୟତୀତ 'ଋତୁ ବର୍ଣ୍ଣନା' ଓ 'ଭକ୍ତ ରତ୍ନମାଳିକା' ପ୍ରଭୃତି କବିତା ସଂକଳନ ପ୍ରକାଶିତ ହେଲା । ସେହିଭଳି ତେଲୁଗୁ ଭାଷାରେ ରଚିତ 'ମାନ୍ତ ଗୀତତତ୍ତ୍ୱ' ପୁସ୍ତକ ମାନ୍ଦ୍ରାଜ ପ୍ରଦେଶ ସ୍କୁଲ ସମୂହର ପାଠ୍ୟପୁସ୍ତକ ମନୋନୀତ ହୋଇଥିଲା ଓ କେତେକ ସୁଚିନ୍ତିତ

ତେଲୁଗୁ ପ୍ରବନ୍ଧ ପତ୍ରପତ୍ରିକାରେ ପ୍ରକାଶନ ପରେ ବିକ୍ରମଦେବ ବର୍ମା ବହୁ ସୁନାମର ଅଧିକାରୀ ହୋଇ ପାରିଥିଲେ ।

ଏ ସମୟରେ ମାନ୍ଦ୍ରାଜ ବିଶ୍ୱବିଦ୍ୟାଳୟ ବିକ୍ରମଦେବ ବର୍ମଙ୍କୁ ତେଲୁଗୁ ପାଠ୍ୟ ନିର୍ଦ୍ଧାରଣ ପାଇଁ ପାଠ୍ୟପୁସ୍ତକ ନିର୍ବାଚନ କମିଟି ସଭ୍ୟ ମନୋନୀତ କରିଥିଲେ । ବହୁ ବର୍ଷଯାଏଁ ସେ ଏହି କମିଟିରେ ଜଣେ ଗୁରୁତ୍ୱପୂର୍ଣ୍ଣ ସଭ୍ୟଭାବେ ନିଜର ଦାୟିତ୍ୱ ସମ୍ପାଦନ କରିଥିଲେ । ବିକ୍ରମଦେବ ବର୍ମା ବିଶାଖାପାଟଣାଠାରେ ଅହରହ ଦେଶହିତକର କାର୍ଯ୍ୟରେ ନିମଗ୍ନ ଥିବା-ବ୍ରିଟିଶ ସରକାର ଉପଲବ୍ଧି କରିଥିଲେ । ଏଣୁ ଦେଶସେବାର ସ୍ୱୀକୃତି ସ୍ୱରୂପ ସରକାର ଖ୍ରୀ: ୧୯୧୧ ଡିସେମ୍ବର ୧୨ ତାରିଖରେ ତାଙ୍କୁ ଏକ ସନନ୍ଦ ପ୍ରଦାନ କରିଥିଲେ । ମାନ୍ଦ୍ରାଜ ସରକାରଙ୍କ ମୁଖ୍ୟ ଶାସନ ସଚିବ Mr. A. Stewart ଙ୍କ ସ୍ୱାକ୍ଷରରେ ପ୍ରଦତ୍ତ ଉକ୍ତ ସନନ୍ଦରେ ଉଲ୍ଲେଖ ଥିଲା—

"By command of his excellency the Viceroy and Governor General in council, this certificate is presented in this name of his most Gracious Majesty, King George V, Emperor of India on the occasion of his Majesty's coronation Durbar at Delhi to Sri Vikrama Deb Barma Garu son of Sri Krushnadev Garu in rocognition of his charities and encouragement of scholarship."

ବିଶାଖାପାଟଣା 'ଓଡ଼ିଆ ସମାଜ'ର କାର୍ଯ୍ୟକାରିତା ମଧ୍ୟ ଅନେକ ପରିମାଣରେ ବଢ଼ି ଯାଇଥିଲା । ଏହାର ପ୍ରତିନିଧିମାନେ ଉତ୍କଳ ସମ୍ମିଳନୀ ଅଧିବେଶନଗୁଡ଼ିକରେ ନିୟମିତ ଯୋଗ ଦେଉଥିଲେ । ବ୍ରହ୍ମପୁରଠାରେ ଖ୍ରୀ: ୧୯୧୨ ରେ ଅନୁଷ୍ଠିତ ଅଷ୍ଟମ ଅଧିବେଶନରେ ବିକ୍ରମଦେବ ବର୍ମା, ମୟୂରଭଞ୍ଜ ରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେଓଙ୍କ ବିୟୋଗଜନିତ ଶୋକ ପ୍ରସ୍ତାବ ଆଗତ କରିଥିଲେ । ଏ ପ୍ରସ୍ତାବରେ ସେ କହିଲେ "ପ୍ରାକୃତିକ ଓଡ଼ିଶାର ଆଦର୍ଶ ନରପତି, ଉତ୍କଳ ସମ୍ମିଳନୀର ପ୍ରଥମ ସଭାପତି ମୟୂରଭଞ୍ଜାଧୀଶ୍ୱର ଶ୍ରୀରାମଚନ୍ଦ୍ର ଭଞ୍ଜଦେବଙ୍କର ଅକାଳ ଓ ଆକସ୍ମିକ ବିୟୋଗରେ ଉତ୍କଳୀୟ-

ମାନଙ୍କର ଯେ ଭୟାନକ କ୍ଷତି ହୋଇଅଛି, ସେଥିପାଇଁ ଏହି ସମ୍ମିଳନୀ ଗଭୀର ଶୋକ ପ୍ରକାଶ କରୁଅଛି ।" ଏ ପ୍ରସ୍ତାବ ଆଗତ ପୂର୍ବରୁ ରାଧାନାଥ ରାୟ ସୂଚନା ଦେଇଥିଲେ ଯେ "ମୋ ସଙ୍ଗେ ସ୍ୱର୍ଗୀୟ ମହାରାଜାଙ୍କର ଯେ କେତେଥର ସାକ୍ଷାତ ହୋଇଥିଲା, ସେଥିରୁ ମୁଁ ବୁଝିପାରିଥିଲି—ସେ 'ରାମଚନ୍ଦ୍ର' ନାମକୁ ସାର୍ଥକ କରିଥିଲେ । ତାହାଙ୍କ ବିୟୋଗରେ ଉତ୍କଳର ଯେଉଁ କ୍ଷତି ହେଲା, ତାହା ଶୀଘ୍ର ପୂରଣ ହେବାର ନାହିଁ ।

ବ୍ରିଟିଶ ସରକାର ରାଧାନାଥ ରାୟଙ୍କୁ ଖ୍ରୀ: ୧୯୧୪ ରେ ବରାଖାପାଟଣାର ଅବୈତନିକ ମାଜିଷ୍ଟ୍ରେଟ ନିଯୁକ୍ତ କରିଥିଲେ । ଏହାଥିଲା ଏକ ସମ୍ମାନଜନକ ପଦବୀ ଏବଂ ପାଞ୍ଚବର୍ଷ ପାଇଁ ସେ ଏହି ପଦବୀରେ ରହିଥିଲେ । ଆଉ ଅଧିକ ସମୟ ଏ ଦାୟିତ୍ୱ ତୁଲାଇବା ପାଇଁ ସେ ଅନିଚ୍ଛା ପ୍ରକାଶ କରିଥିଲେ ।

ଏ ସମୟରେ ବରାଖାପାଟଣା ମ୍ୟୁନିସିପାଲିଟିର କର୍ମକର୍ତ୍ତା ହେବାପାଇଁ ଅନୁରୋଧ ଆସିଥିଲା । କିନ୍ତୁ ମ୍ୟୁନିସିପାଲିଟି ପକ୍ଷରୁ କଂସେଇଖାନା ପରିଚାଳିତ ହେଉଥିବା ଯୋଗୁଁ ସେ ଏହି ସଂସ୍ଥାର କର୍ମକର୍ତ୍ତା ହେବା ପାଇଁ ମନା କରି ଦେଇଥିଲେ । ସେହିଭଳି ଜିଲ୍ଲାବୋର୍ଡ଼ କର୍ମକର୍ତ୍ତା ଅନୁରୋଧକୁ ମଧ୍ୟ ପ୍ରତ୍ୟାଖ୍ୟାନ କରି କହିଥିଲେ ଯେ ବୋର୍ଡ଼ ପକ୍ଷରୁ ପରିଚାଳିତ 'କାଞ୍ଜିଆ ହାଉସ୍' ଯଦି ବନ୍ଦକରି ଦିଆଯାଏ ତେବେ ସେ ଏହାର କର୍ମକର୍ତ୍ତା ହେବେ । ନିରୀହ ପଶୁଗୁଡ଼ିକୁ ଯେଉଁ ସଂସ୍ଥା କଷଣ ଦେଉଛି—ସେ ସେହି ସଂସ୍ଥାରେ ପ୍ରବେଶ କରିବେ ନାହିଁ ।

## ଉତ୍କଳ ସମ୍ମିଳନୀ ସଭାପତି

ପାରଳାଖେମୁଣ୍ଡିର ନବୀନ ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କ ଆହ୍ୱାନକ୍ରମେ ଉତ୍କଳ ସମ୍ମିଳନୀର ଦଶମ ଅଧିବେଶନ ଖ୍ରୀ: ୧୯୧୪ ଡ଼ିସେମ୍ବର ମାସରେ ପାରଳାଠାରେ ଅନୁଷ୍ଠିତ ହୋଇଥିଲା । ଏ ସମ୍ମିଳନୀର ବିଶେଷତ୍ୱ ହେଲା—ଏଥିପୂର୍ବେ ଉତ୍କଳ ସମ୍ମିଳନୀ ଗୁରୁତ୍ୱପୂର୍ଣ୍ଣ ରାଜ୍ୟରେ ବିଚ୍ଛିନ୍ନ ହୋଇ ରହିଥିବା ସମସ୍ତ ଓଡ଼ିଆ ଭାଷାଭାଷୀଙ୍କୁ ଏକଶାସନାଧୀନ କରିବା ପାଇଁ ଦାବୀ କରୁଥିଲା; ଏଠାରେ କିନ୍ତୁ ଓଡ଼ିଆଙ୍କ ପାଇଁ ସ୍ୱତନ୍ତ୍ର 'ଓଡ଼ିଶା ପ୍ରଦେଶ' ଦାବୀ କରାଗଲା । ଏ ଅଧିବେଶନରେ ଫକୀରମୋହନ ସେନାପତି, ଗୋପବନ୍ଧୁ

ଦାସ, ଶଶିଭୂଷଣ ରଥ, ଜଗବନ୍ଧୁ ସିଂହ, ବ୍ରଜସୁନ୍ଦର ଦାସ, ରାମନାରାୟଣ ମିଶ୍ରଙ୍କ ଭଳି ବିଶିଷ୍ଟ ଲୋକଙ୍କ ସମେତ ପ୍ରାକୃତିକ ଓଡ଼ିଶାର ହଜାର ହଜାର ଦର୍ଶକ ଯୋଗ ଦେଇଥିଲେ । ଉତ୍କଳ ଗୌରବ ମଧୁସୂଦନ ଦାସ, ପଣ୍ଡିତ ନୀଳକଣ୍ଠ ଦାସ, ନାରାୟଣଚନ୍ଦ୍ର ଧୀର ନରେନ୍ଦ୍ର, ପଣ୍ଡିତ ଗୋଦାବରୀଶ ମିଶ୍ର ପ୍ରମୁଖ ବିଶିଷ୍ଟ ବ୍ୟକ୍ତିମାନେ ଉଦ୍‌ବୋଧନ ଦେଇଥିଲେ । ସଭାପତିଙ୍କ ଆସନ ଅଳଂକୃତ କରିଥିଲେ ବୀରଭଦ୍ରଦେବ ବର୍ମା । ସଭା ସୁପରିଚାଳନା ପରେ ସେ ନିଜର ସୁଚିନ୍ତିତ ଅଭିଭାଷଣରେ କହିଥିଲେ:—

"ଉତ୍କଳ ସମ୍ମିଳନୀ ସମଗ୍ର ଓଡ଼ିଶା ଦେଶର ମହୋଚ୍ଚ ଏବଂ ସର୍ବୋତ୍କୃଷ୍ଟ ଜାତୀୟ ଅନୁଷ୍ଠାନ । ତାହାର ସଭାପତି ରୂପେ ଆଜଯାଏ ଗଣ୍ୟମାନ୍ୟ ବିଶିଷ୍ଟ ବ୍ୟକ୍ତିମାନେ ବରିତ ହୋଇ ଆସିଛନ୍ତି । ବିଗତ ପୁରୀ ଅଧିବେଶନରେ ଆମ୍ଭ-ମାନଙ୍କର ଗୌରବାଦ୍ଧ ଆଶ୍ରୟ ସ୍ୱନାମଧନ୍ୟ ମାନ୍ୟବର ମଧୁସୂଦନ ଦାସ, ସି. ଆଇ. ଇ. ସଭାପତିର ଆସନ ଅଳଙ୍କୃତ କରିଥିଲେ । ତାଙ୍କ ପରେ ମୋ ପରି ନଗଣ୍ୟ ବ୍ୟକ୍ତିର ନିର୍ବାଚନ କୌଣସି ଅଂଶରେ ସମ୍ମିଳନୀର ଗୌରବ ଓ ଗରିମା ବୃଦ୍ଧି କରିବ ନାହିଁ । ଅଧିକନ୍ତୁ ସଭାପତିର ଆସନ ତଦ୍ଦ୍ୱାରା ଲୋକ ଦୃଷ୍ଟିରେ ମୂଲ୍ୟହୀନ ଥିବାର ପ୍ରତିପାଦିତ ହେବ ବୋଲି ମୋହର ଆଶଙ୍କା ଜନ୍ମିଅଛି । ଏହି ଆଶଙ୍କା କରି ଏବଂ ନିଜ ଅପାରଗତା ଓ ଅନୁପଯୁକ୍ତତା ସମ୍ବନ୍ଧେ ଆତ୍ମଜ୍ଞାନ ହେବାରୁ ମୁଁ ପ୍ରଥମତଃ ଅଭ୍ୟର୍ଥନା ସମିତିର ସାଗ୍ରହ ପ୍ରାର୍ଥନା ରକ୍ଷା କରିବାକୁ ଅସମ୍ମତ ଥିଲି । ଦେଶର ଅନେକ ଯୋଗ୍ୟତର ଏବଂ ପ୍ରବୀଣ ବ୍ୟକ୍ତି ଥାଉଁ ଥାଉଁ ମତେ କାହିଁକି ନିର୍ବାଚନ କଲେ, ଏହାର କାରଣ ମନମଧ୍ୟରେ ଖୋଜିବାକୁ ବସିଲି, ବୁଝିଲି ଅଭ୍ୟର୍ଥନା ସମିତି ଏ ଗୌରବ ମତେ ଦେଇ ନାହାନ୍ତି । ଯେଉଁ ଓଡ଼ିଆ ଜାତି ଜୟପୁର ଓ ବିଶାଖାପାଟଣାରେ ନିଜର ବ୍ୟକ୍ତିତ୍ୱ, ନିଜର ମାତୃଭାଷା ପର୍ଯ୍ୟନ୍ତ ଭୁଲିଯିବାକୁ କାଳକ୍ରମେ ଏବଂ ଅବସ୍ଥାର ବିପର୍ଯ୍ୟୟରେ ବାଧ୍ୟ ହୋଇଅଛନ୍ତି, ସେମାନଙ୍କ ସଂଜ୍ଞାପ୍ରାପ୍ତି ନିମିତ୍ତ ମାତୃସ୍ତନ୍ୟ ପାନରୁ ବଞ୍ଚିତପ୍ରାୟ ମାତୃଭାଷାର ଅନବରତ ଚର୍ଚ୍ଚାରୁ ବିରତ ମୋ ପରି ତାଙ୍କର ଜଣେ ଦୁର୍ବଳ ପ୍ରତିନିଧିଙ୍କୁ ସଭାପତି ନିର୍ବାଚନ କରିଅଛନ୍ତି । ମତେ ବର୍ତ୍ତମାନ ଆପଣମାନେ ଯେଉଁ ସମ୍ମାନରେ ଗୌରବାନ୍ୱିତ କରିଅଛନ୍ତି, ତାହା ବାସ୍ତବିକ ମୋହର ବ୍ୟକ୍ତିଗତ ଗୌରବ ନୁହେଁ, ଏହା ମନେକରି

ଅଭ୍ୟର୍ଥନା ସମିତିର ଆମନ୍ତ୍ରଣ ଗ୍ରହଣ କଲି । ବିଶାଖାପଟ୍ଟଣର ଓଡ଼ିଆମାନଙ୍କ ପ୍ରତି ଆପଣଙ୍କ ମମତା ପ୍ରଶଂସନୀୟ । ମୋ ତରଫରୁ ଏବଂ ଜୟପୁର, ବିଶାଖାପଟ୍ଟଣ ଓଡ଼ିଆମାନଙ୍କ ପକ୍ଷରୁ ମୁଁ ଏଥିପାଇଁ ଆପଣମାନଙ୍କୁ ଅନ୍ତରର ସହିତ ଧନ୍ୟବାଦ ଦେଉଅଛି । ବିଗତ ବର୍ଷ ସମ୍ମିଳନୀ ସଭାରେ ଡ଼. ନରସିଂହ ଗୁପ୍ତ ପାଠକ ନାମକ ଜଣେ ବିଶାଖାପଟ୍ଟଣର ଓଡ଼ିଆ ସେହି ଅଞ୍ଚଳରେ ଓଡ଼ିଆମାନଙ୍କ ଦୁରବସ୍ଥାର ପରିବର୍ତ୍ତନ ନିମନ୍ତେ ଯେଉଁ କରୁଣ ନିବେଦନ ପ୍ରକାଶ କରିଥିଲେ, ତାହା ଫଳରେ ସମ୍ଭବତଃ ଆଜ ବିଶାଖାପଟ୍ଟଣର ସୋଦରମାନଙ୍କ ପ୍ରତି ଆପଣମାନଙ୍କର ଦୃଷ୍ଟି ପଡ଼ିଅଛି । ମୋହର ନିର୍ବାଚନର ଅନ୍ୟ ଅର୍ଥ, ଅପର କାରଣ ମୁଁ ପାଇପାରୁ ନାହିଁ । ଯାହା ହେଉ ଏହା ଆପଣମାନଙ୍କର ଗମ୍ଭୀର ହୃଦୟବତ୍ତା ଓ ଉଦାରତାର ପରିଚୟ ଦେଉଅଛି ।

ସାମ୍ରାଜ୍ୟର ଘୋର ଅସମୟରେ ପୃଥିବୀର ସର୍ବବିଧ୍ୱଂସକାରୀ ବିପ୍ଳବ ଓ ବ୍ୟସ୍ତାଚ କାଳରେ ଆମ୍ଭମାନଙ୍କର ଏହି ସମ୍ମିଳନୀର ଦଶମ ଅଧିବେଶନ ହେଉଅଛି । ଇଉରୋପର ମହାଯୁଦ୍ଧ ବିଂଶତି ଶତାବ୍ଦୀର ଏକ ବିଶେଷ ଘଟଣା । ପୁନର୍ବାର କୁରୁକ୍ଷେତ୍ରର ଆବିର୍ଭାବ ହୋଇଅଛି । କୁରୁକ୍ଷେତ୍ର ଫ୍ରାନ୍ସ, ବେଲଜିୟମକୁ ସ୍ଥାନାନ୍ତରିତ ହୋଇଅଛି; ମାତ୍ର ଉପସ୍ଥିତ ମହାଯୁଦ୍ଧର କାରଣ ଅନୁସନ୍ଧାନ କଲେ ଜଣାଯାଏ ଯେ, ଜର୍ମାନୀ ନିଜର ଅନ୍ୟାୟ ଲୋଭ ଆଶାରେ ଅନ୍ୟ ରାଜାମାନଙ୍କର ସ୍ୱାଧୀନତା ନଷ୍ଟ କରି ନିଜ ରାଜ୍ୟବୃଦ୍ଧି ପିପାସା ଚରିତାର୍ଥ କରିବା ଉଦ୍ଦେଶ୍ୟରେ ଏହି ଯୁଦ୍ଧ ଆରମ୍ଭ କରିଅଛି । ଜର୍ମାନୀ କ୍ଷୁଦ୍ର ରାଜ୍ୟ ସମୂହର ସ୍ୱାଧୀନତା ଓ ଅସ୍ତିତ୍ୱ ପର୍ଯ୍ୟନ୍ତ ଲୋପ କରିବାକୁ ଉଦ୍ୟମ କରିଅଛି । ଆନ୍ତର୍ଜାତୀୟ ପବିତ୍ର ସନ୍ଧି ସର୍ତ୍ତମାନ ଲଙ୍ଘନ କରି ବିଶ୍ୱାସଘାତକତାର ପରାକାଷ୍ଠା ଦେଖାଇଅଛି । ମାନବର ସଭ୍ୟତାକୁ ବହୁଦୂର ଏବଂ ବହୁବର୍ଷ ନିମନ୍ତେ ପଛକୁ ଠେଲାଇ ଦେଇଅଛି । ଜଗତର ଶାନ୍ତି ଓ ସଭ୍ୟତା ପଥରେ ମହା ଅନର୍ଥ, ଘୋର ବ୍ୟାଘାତ ଘଟାଇଅଛି । ଜର୍ମାନୀ କେବଳ ଇଂଲଣ୍ଡର ଶତ୍ରୁ ନୁହେଁ, ସେ ଯେଉଁ କାଣ୍ଡସବୁ କରିଅଛି, ଯୁଦ୍ଧରେ ସେ ଯେଉଁ ଅମାନୁଷିକ ଅତିମାନୁଷିକ ଦୌରାତ୍ମ୍ୟ ଓ ଦୁର୍ବୃତ୍ତର ପନ୍ଥା ଅନୁସରଣ କରିଅଛି, ସେଥିରେ ସେ ସମଗ୍ର ମାନବଜାତିର ଶତ୍ରୁ ବୋଲି ମୁଁ କହିପାରେ । ଜର୍ମାନୀର ଏଭଳି ଦୌରାତ୍ମ୍ୟପୂର୍ଣ୍ଣ କାର୍ଯ୍ୟରେ ସଭ୍ୟ ଇଂଲଣ୍ଡର କି କର୍ତ୍ତବ୍ୟ ? ସେ ନୀରବ ନିଶ୍ଚଳ ରହିପାରେ କି ? ସେପରି ନୀରବ ରହିଲେ ଜଗତର

ଇତିହାସରେ ସଭ୍ୟଇଂଲଣ୍ଡର, ଶାନ୍ତିପ୍ରିୟ ଇଂରେଜ ଜାତିର ଆଉ ଗୌରବ ରହନ୍ତା କି ? ଯେଉଁ ଜାତି ଚିରକାଳ ନ୍ୟାୟ ଓ ଶାନ୍ତି ନିମନ୍ତେ ଜଗତରେ ସୁପ୍ରସିଦ୍ଧ, ଯେଉଁ ଜାତି ଶିକ୍ଷା ଓ ସଭ୍ୟତାର ପ୍ରଚାର ତଥା ପ୍ରଚ୍ଚର ନିମନ୍ତେ ସର୍ବଦା ତତ୍ପର, ଯେଉଁ ଦେଶରେ ନ୍ୟାୟ ଓ ସତ୍ୟର ଧ୍ୱଜା ନିରନ୍ତର ଉଡୁଅଛି, ସେହି ଦେଶ ଓ ସେହି ଜାତି କି ଜର୍ମାନୀର ଅନାଚାର ସହ୍ୟ କରିବ ? ସନ୍ଧିସ୍ଥାପନ ନିମନ୍ତେ ଆମ୍ଭମାନଙ୍କର ସମ୍ରାଟ ପଞ୍ଚମ ଜର୍ଜ ପ୍ରଭୃତି ଯତ୍ନ କରିଥିଲେ; କିନ୍ତୁ ଜର୍ମାନୀର ଦୁରଭିସନ୍ଧି ସମକ୍ଷରେ ସେ ସକଳ ଉଦ୍ୟମ ବୃଥା ହେଲା । ଯେଉଁ ଜର୍ମାନୀ ଏହି ଅଶାନ୍ତିକର ଯୁଦ୍ଧ ନିମନ୍ତେ ବହୁବର୍ଷ ଆଗରୁ ଅବୈଧ ଯତ୍ନ କରୁଥିଲା, ସେ ଶାନ୍ତିର ପ୍ରସ୍ତାବ ଗ୍ରହଣ କରିବ କାହିଁକି ? ଏପରି ଅବସ୍ଥାରେ ଯୁଦ୍ଧ ଘୋଷଣା କରିବା ଛଡ଼ା ଇଂଲଣ୍ଡର ଉପାୟାନ୍ତର କଅଣ ? ବେଲ୍‌ଜିୟମର ଧ୍ୱଂସ ସ୍ୱଚକ୍ଷୁରେ ଦେଖି ନୀରବ ହୋଇ ଇଂଲଣ୍ଡ ରହିପାରନ୍ତା କି ? ଚତୁର୍ଦ୍ଦିଗରେ ଫେନିଳ ସମ ଜଳରାଶିରେ ପରିବେଷ୍ଟିତ ଦ୍ୱୀପ ମଧ୍ୟରେ ଔଦାସ୍ୟରେ ବସି ଆନ୍ତର୍ଜାତୀୟ ନିୟମ ଭଙ୍ଗ ହେବାର ଦେଖୁଥିଲେ ଇଂଲଣ୍ଡର ଅହଙ୍କାର, ଇଂରେଜୀ ଜାତିର ବିଶେଷତ୍ୱ ଆଉ ରହନ୍ତା କେଉଁଠାରେ ? ମନ୍ତ୍ରୀ ଆସ୍‌କ୍ୱିଥ ସେଦିନ କହିଥିଲେ, "ଇଂଲଣ୍ଡ ଏପରି ସ୍ଥଳରୁ, ନୀରବ ଉଦାସୀନ ଭାବରେ ରହିବା ଅପେକ୍ଷା ତାହାର ନାମ ଜଗତର ଇତିହାସ ପୃଷ୍ଠାରୁ ଏକାବେଳକେ ଲୋପ ପାଇବା ବରଂ ଶ୍ରେୟସ୍କର ।" ନ୍ୟାୟ, ଧର୍ମ ଓ ଶାନ୍ତି ନିମନ୍ତେ, ସମଗ୍ର ଜଗତର ଉପକାର ନିମନ୍ତେ, ମାନବଜାତିର ସ୍ୱାଧୀନତା ଅକ୍ଷୁଣ୍ଣ ଅପ୍ରତିହତ ରଖିବା ନିମନ୍ତେ ଇଂଲଣ୍ଡ ଅନ୍ୟ ଉପାୟ ନ ଦେଖି ଅବଶେଷରେ ଯୁଦ୍ଧ ଘୋଷଣା କରିଅଛି । "ଯତୋଧର୍ମ ସ୍ତତୋ ଜୟଃ" ଏହା ନିଶ୍ଚୟ । କିନ୍ତୁ କେବଳ ନୀତିବାକ୍ୟ ଘୋଷିହୋଇ ନୀରବ ରହିଲେ ଆମ୍ଭମାନଙ୍କର ଧର୍ମ ପ୍ରତି, ସତ୍ୟ ପ୍ରତି, ଶୃଙ୍ଖଳା ପ୍ରତି ବିଶେଷ ଆସ୍ଥା ଅଛି ବୋଲି ବୁଝାଯିବ ନାହିଁ । ନ୍ୟାୟପକ୍ଷରେ ଜୟକାମନା ମଧ୍ୟ ଯଥେଷ୍ଟ ନୁହେଁ । ସମାଜରେ ଶାନ୍ତି ସ୍ଥାପନ ନିମନ୍ତେ, ଯେ ବ୍ୟାକୁଳ, ତାଙ୍କୁ ନ୍ୟାୟ ପକ୍ଷରେ ସାହାଯ୍ୟ କରିବାକୁ ହେବ । ଭାରତ ସଦା ଶାନ୍ତିପ୍ରିୟ, ଭାରତୀୟମାନେ ସର୍ବଦା ନ୍ୟାୟର ପକ୍ଷପାତୀ । ରାଜଭକ୍ତି ସେମାନଙ୍କ ଅସ୍ଥିମଜ୍ଜାରେ ଏକୀଭୂତ ହୋଇ ଶତ ଶତ ବର୍ଷ ପର୍ଯ୍ୟନ୍ତ ଅବିଚଳିତ ଭାବରେ ରହିଅଛି; ଅତଏବ ଦେଶର ସକଳ ଶ୍ରେଣୀ, ସକଳ

ସମ୍ବଲପୁରର ଲୋକେ ଯୁଦ୍ଧରେ ଇଂରେଜଙ୍କ ଜୟ କାମନା କରୁଅଛନ୍ତି । ଭାରତର ଯେଉଁ ଆଡକୁ ଚାହଁ ଯୁଦ୍ଧ ନିମନ୍ତେ ଯଥାଶକ୍ତି ସାହାଯ୍ୟ ଦେବାକୁ ସମସ୍ତେ ବ୍ୟାକୁଳ । ସମସ୍ତେ ଏହି ବିଷୟରେ ଏକମତ । ଏପରି ମତୈକ୍ୟ, ଏପରି ରାଜଭକ୍ତିର ସରଳ ସ୍ୱାଭାବିକ ଅଭିବ୍ୟକ୍ତି ଅନ୍ୟ କୌଣସି ଘଟଣାରେ ଦେଖାଯାଇଅଛି କି ନା ସନ୍ଦେହ । ଦାନର ପ୍ରତିଦାନ ଅଛି । ଇଂରେଜ ଜାତି ଭାରତର ଏହି ସହାନୁଭୂତି ହୃଦୟଙ୍ଗମ କରିଅଛନ୍ତି ଏବଂ ଗୋରାଙ୍କ ପାର୍ଶ୍ୱରେ କଳା ସିପାହି ଏକଲକ୍ଷ୍ୟ, ଏକ ସାମ୍ରାଜ୍ୟ ରକ୍ଷା ଚେଷ୍ଟାକରେ, ଏକ ପ୍ରବଳ ଚକ୍ରବର୍ତ୍ତୀଙ୍କ ନିମନ୍ତେ ଯୁଦ୍ଧ କରୁଅଛନ୍ତି; ଏହାହିଁ ଭାରତର ଗୌରବ ।

ବିଚ୍ଛିନ୍ନ ହୋଇ ଏକ ଶାସନାଧୀନରେ ନ ରହିଥିବାରୁ ଓଡ଼ିଆମାନଙ୍କ ସମୂହ ଶକ୍ତିର ବିକାଶ ପାଇପାରୁ ନାହିଁ । ଉତ୍କଳ ନାନା କାରଣରୁ ଶିକ୍ଷା ସମ୍ପର୍କରେ ପଛରେ ପଡ଼ିଅଛି । ତାହାର ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ନୁହେଁ । ତାହାର ପୂର୍ବ ଗୌରବ ନାହିଁ । ପୂର୍ବତନର ଐଶ୍ୱର୍ଯ୍ୟରେ ସେ ଗର୍ବ କରିବାକୁ ଆଉର ଶିକ୍ଷା କରି ନାହିଁ । ନୂଆ ଯଶ ଆଣିବାରେ ତାହାର ଉଦ୍ୟମ ନାହିଁ । ନୋହିଲେ କି ଆଜି ଏହି ଯୁଦ୍ଧବେଳେ ତାହାର ଇତିହାସ ପ୍ରସିଦ୍ଧ ପାଇକ ସେନାକୁ ସେ ଯୁଦ୍ଧକୁ ପଠାଇ ନ ଥାନ୍ତା ? ଯେଉଁ କୃଷକ ସେନା ବଳରେ ଗଙ୍ଗାଠାରୁ ଗୋଦାବରୀ ଯାଏଁ ଉତ୍କଳ ଅଖଣ୍ଡ ରାଜ୍ୟ ସଂସ୍ଥାପନ କରିଥିଲା, ଯେଉଁମାନଙ୍କର ପ୍ରବଳ ସ୍ୱାର୍ଥତ୍ୟାଗର ପ୍ରଭାବରେ ଓଡ଼ିଶା ତିନି ଶତ ବର୍ଷ ପର୍ଯ୍ୟନ୍ତ ମୁସଲମାନ୍ ସୈନ୍ୟଙ୍କ ଆକ୍ରମଣ ପ୍ରତିହତ କରିବାକୁ ସମର୍ଥ ହୋଇଥିଲା ସେମାନେ କାହାନ୍ତି ? ଆଜି ସେହି ସେନାମାନଙ୍କୁ ଉତ୍କଳ ଯୁଦ୍ଧକ୍ଷେତ୍ରକୁ ପଠାଇପାରିଥିଲେ ନିଜକୁ କୃତାର୍ଥ ମଣିଥାନ୍ତା । ସେ ଯାହାହେଉ ତାହାର ବର୍ତ୍ତମାନ ଅବସ୍ଥାରେ ସେ ଯାହା କରିପାରେ ଉତ୍କଳ ଯୁଦ୍ଧର ସାହାଯ୍ୟାର୍ଥେ ତାହା କରିଅଛି, ଏଥିରେ କୌଣସି ସନ୍ଦେହ ନାହିଁ । ଦେଶର ବିଭିନ୍ନ କେନ୍ଦ୍ରରେ ସଭାସମିତିମାନ ହୋଇଯାଇଅଛି । ଅନ୍ୟାନ୍ୟ ଭାରତୀୟ ଜାତିଙ୍କ ସହ ଓଡ଼ିଆ ଇଂରେଜଙ୍କ ଜୟ କାମନା କରୁଅଛି; ଛିନ୍ନ ବିଚ୍ଛିନ୍ନ ହୋଇ ରହିଥିବାରୁ ଉତ୍କଳର ଅଂଶବିଶେଷର ସହାନୁଭୂତି ଓ ସାହାଯ୍ୟର ଫଳ ପରିସ୍ଫୁଟ ହେଉ ନାହିଁ । ବ୍ରହ୍ମପୁରଠାରେ ଦାନକର ସଭାରେ ପ୍ରାୟ ୩୦୦୦୦ ଟଙ୍କା ସ୍ୱୀକୃତ ହୋଇଅଛି । ଏକା ପାରଳା ରାଜାସାହେବ ଏକ ଲକ୍ଷ ଟଙ୍କା ଦାନ କରିଅଛନ୍ତି । ଜୟପୁର, ଗଞ୍ଜାମ, ଓଡ଼ିଶା, ସିଂହଭୂମ ସକଳ ସ୍ଥାନର

କ ରାଜା କ ପ୍ରଜା ଯଥାଶକ୍ତି ଗ୍ଧାଦେଇ ଅଛନ୍ତି । ଏସବୁ ଦାନର ପରିମାଣ ଭାରତର ଅନ୍ୟାନ୍ୟ ସବଳ ଜାତିଙ୍କ ଦାନର ସ୍ରୋତରେ ସମ୍ମିଳିତ ହେବାରୁ ଉତ୍କଳ ତାହାର ବିଶେଷତ୍ୱ ଦେଖାଇବାକୁ ସୁବିଧା ପାଇଁ ନାହିଁ । ଯାହା ହେଉ ମୁଁ ଆଶା କରେ ଯେ ଭାରତର ସମୂହ ରାଜଭକ୍ତି ଓ ସାହାଯ୍ୟ ଭିତରେ ଉତ୍କଳର ଅଂଶ ସରକାର ବାହାଦୁର ସ୍ଥିର କରିନେବେ । ସେ ଅଂଶ ସାମାନ୍ୟ ନୁହେଁ, ଏହା ଅନୁସନ୍ଧାନ କଲେ ସରକାର ବୁଝିପାରିବେ ବୋଲି ମୋର ବିଶ୍ୱାସ; କିନ୍ତୁ ଏ ସବୁ ଅପେକ୍ଷା ଓଡିଆମାନେ ଏକତ୍ରିତ ହୋଇ ଏକ ସ୍ୱରରେ ଏହି ସମ୍ମିଳନୀ ରୂପ ପବିତ୍ରମଞ୍ଚରୁ ପ୍ରବଳପ୍ରତାପୀ ସମ୍ରାଟଙ୍କ ପ୍ରତି ଯେଉଁ ରାଜଭକ୍ତି ·ଦେଖାଇବେ, ତାହା ଅତୁଳନୀୟ । ଏହାହିଁ ଓଡ଼ିଆଙ୍କ ସମୂହ ରାଜଭକ୍ତିର ବିକାଶ ଧରିବାକୁ ହେବ । ଆମ୍ଭେମାନେ ଇଂରେଜଙ୍କ ଜୟ କାମନା କରିବା ଏବଂ ତାଙ୍କ ବିଜୟ ଗୌରବରେ ନିଜକୁ ଗୌରବାନ୍ୱିତ ମନେ କରିବା । ସମ୍ମିଳନୀ ପ୍ରତିବର୍ଷ ହେଉଅଛି; କିନ୍ତୁ ଯୁଦ୍ଧ ଯୋଗୁଁ ଏ ବର୍ଷର ଅଧିବେଶନ ସ୍ଥଗିତ ନ ହେବା ସମୀଚୀନ ହୋଇଅଛି, ଯେହେତୁ ଆମ୍ଭେମାନେ ମିଳିତ ହୋଇ ଏକତ୍ର ରାଜଭକ୍ତି ଦେଖାଇବାକୁ ସମର୍ଥ ହୋଇଥାଇଁ ଏବଂ ସମ୍ମିଳନୀ ନିମନ୍ତେ ପାରଳା ପ୍ରକୃଷ୍ଟ ସ୍ଥାନ । ଯେଉଁ ଓଡିଆ ରାଜା ଅକାତରରେ ଏକଲକ୍ଷ ଟଙ୍କା ଦାନକଲେ, ସେହି ରାଜାଙ୍କର ରାଜ୍ୟରେ ସମ୍ମିଳନୀ ହେବା ବଡ଼ ସୁନ୍ଦର ଓ ଉପଯୁକ୍ତ ହୋଇଅଛି ।

ଯୁଦ୍ଧ ଏକ ମହାଦୁଃଖର କାରଣ । ରାଜା ଓ ପ୍ରଜା ଉଭୟଙ୍କ ପକ୍ଷରେ ଅଶେଷ କ୍ଷତିକାରକ । ଏହି ସାଧାରଣ କ୍ଷତି ଓ କ୍ଷୋଭର ବିଷୟ ଉଲ୍ଲେଖ କରୁଁ କରୁଁ ଆମ୍ଭମାନଙ୍କର ଯେଉଁ ବିଶେଷ ଦୁଃଖ ଏ ବର୍ଷ ମଧ୍ୟରେ ଦୈବ ଦୁର୍ବିପାକରୁ ସଂଘଟିତ ହୋଇଅଛି, ତାହା ଉଲ୍ଲେଖ କରିବା ଆବଶ୍ୟକ ମନେ କରେ ।

ଦୁଃଖର ବିଷୟ ପ୍ରତି ସମ୍ମିଳନୀର ସଭାର କାର୍ଯ୍ୟାବଳୀ ଭିତରେ ଆମ୍ଭମାନଙ୍କୁ ଗୋଟିଏ ଶୋକ ପ୍ରକାଶ ନିର୍ଦ୍ଧାରଣ ଗୃହୀତ କରିବାକୁ ହେଉଅଛି । ଏଥିରୁ ସ୍ପଷ୍ଟ ଜଣାଯାଉଅଛି ଯେ, ଆମ୍ଭମାନଙ୍କର ମାତୃଭୂମି ଚିରଦୁଃଖିନୀ । ତା'ର ଶୋକୋଚ୍ଛ୍ୱାସର ବିରାମ ନାହିଁ । ବର୍ଷକୁ ବର୍ଷ ତାହାର କେହି ନା

କେହି ଯୋଗ୍ୟ ସନ୍ତାନ ତାକୁ ଛାଡ଼ିଯାଉ ଅଛନ୍ତି । ସ୍ୱର୍ଗୀୟ ବାସୁଦେବ ରାଜମଣି ରାଜଦେବଙ୍କୁ ହରାଇ କିଏ ଶୋକବିହ୍ୱଳ ନ ହେବ ? ମଞ୍ଜୁଷାରେ ତାଙ୍କର ସୁଖ୍ୟାତି ସୀମାବଦ୍ଧ ନ ଥିଲା । ରାଜା ବାସୁଦେବ ଜଣେ ନିରଭିମାନ ରାଜପୁରୁଷ ଥିଲେ । ହିନ୍ଦୁ ଧର୍ମ ତାଙ୍କର ପ୍ରତି କାର୍ଯ୍ୟରେ ପରିଲକ୍ଷିତ ହେଉଥିଲା । ସଂସ୍କୃତ, ତେଲୁଗୁ ଏବଂ ଓଡ଼ିଆ ସାହିତ୍ୟରେ ତାଙ୍କର ନିପୁଣତା ଥିଲା । ସେ ନିଜେ କୌଣସି ପୁସ୍ତକାଦି ଲେଖିଅଛନ୍ତି କି ନାହିଁ ସନ୍ଦେହ । ଯେ ଖଣ୍ଡିଏ କୋଇଲି ଲେଖିଅଛି ଏହି ଯୁଗରେ ସେ କବି ବୋଲି ମନରେ ଗର୍ବ କରୁଅଛି । ଯେଉଁ ବ୍ୟକ୍ତି ସାହିତ୍ୟ ପତ୍ରିକାରେ ଖଣ୍ଡିଏ ପ୍ରବନ୍ଧ ଲେଖିଅଛି, ସେ ଆଧୁନିକ ଜଗତରେ ସାହିତ୍ୟିକ ଓ ଲେଖକ ବୋଲି ପରିଚିତ । ଏହିପରି ସ୍ଥଳରେ ଯେଉଁ ରାଜା ଏପରି ବାହ୍ୟାଡ଼ମ୍ବରର ଆଭାସ କେବେ ହେଁ ଦେଖାଇ ନାହାନ୍ତି ତାଙ୍କୁ ସାହିତ୍ୟିକ ବୋଲି ଧରିବାକୁ ଆଧୁନିକ ଶିକ୍ଷିତ ମଣ୍ଡଳୀ କାହିଁକି ଅଗ୍ରସର ହେବେ ? କିନ୍ତୁ ରାଜା ବାସୁଦେବଙ୍କ ଚରିତ୍ର ଯେ ଜାଣିଅଛି ମୁକ୍ତକଣ୍ଠରେ ସେ ସ୍ୱୀକାର କରିବ ଯେ ସ୍ୱର୍ଗୀୟ ରାଜା ମହୋଦୟଙ୍କ ପକ୍ଷରେ ସାହିତ୍ୟ ଚର୍ଚ୍ଚା ଏକ ପ୍ରକାର ବ୍ୟସନ ହୋଇପଡ଼ିଥିଲା । ସେ ଦିନରେ ପ୍ରାୟ ଆଠ ଘଣ୍ଟା କାଳ ଛନ୍ଦ, ଚୌପଦୀ, କାବ୍ୟ, ନାଟକ, ପଦ୍ୟ ଇତ୍ୟାଦିର ଚର୍ଚ୍ଚା କରୁଥିଲେ । ସାହିତ୍ୟ ପାଇଁ ଆମ୍ଭମାନଙ୍କ ମଧ୍ୟରୁ କେତେ ଜଣ ସେଥିର ଅଷ୍ଟମାଂଶ ସମୟ ବ୍ୟୟ କରିଥାଉଁ ? ସେ ଜଣେ ଉଚ୍ଚଧରଣର କାବ୍ୟ ମୀମାଂସକ ଥିଲେ । ଛନ୍ଦ, ବ୍ୟାକରଣ ଓ ଅଳଙ୍କାରରେ ତାଙ୍କର ଜ୍ଞାନ ବଡ଼ ଗଭୀର ଥିଲା । ଗୋଟିଏ ଛନ୍ଦ ବା ପଦ୍ୟ ପାଠହେବା ମାତ୍ରେ ଅନ୍ୟାନ୍ୟ ଭାଷାର ସାହିତ୍ୟ ମଧ୍ୟରେ ଉକ୍ତ ଭାବର କବିତା ସେ ଆବୃତ୍ତି କରି ଏକର ସହିତ ଅନ୍ୟର ଯେ ତୁଳନା କରିପାରୁ ଥିଲେ ତାହା ଅତି ଅଳ୍ପ ବ୍ୟକ୍ତିଙ୍କ ପକ୍ଷରେ ସମ୍ଭବ । ତାଙ୍କ ସ୍ମରଣ ଶକ୍ତିର ପ୍ରଶଂସା କରି ଜଣେ ପଣ୍ଡିତ ଦିନେ କହିଥିଲେ—"ମଞ୍ଜୁଷାର ରାଜା ନିଜେ ଗୋଟିଏ ଜୀବନ୍ତ Encyclopaedia ( ବିଶ୍ୱକୋଷ ) ।" ଏହିପରି ଜଣେ ବିଶିଷ୍ଟ କୃତୀ ସନ୍ତାନକୁ ହରାଇ ଉତ୍କଳ ମାତାଙ୍କର ବଦନ ଆଜି ବିଷଣ୍ଣ, ମଳିନ ହୋଇଅଛି ।

ପରିବାରରେ କୌଣସି ଦୁଃଖ ଦୁର୍ବିପାକର ଘଟଣା ଘଟିଲେ ବନ୍ଧୁବାନ୍ଧବମାନେ ସହାନୁଭୂତି ପ୍ରକାଶକରି ସେହି ଦୁଃଖର ଲଘବ କରିଥାନ୍ତି । କିନ୍ତୁ ଦୁଃଖର ବିଷୟ ଓଡ଼ିଶାର ଏ ବର୍ଷ ସେ ଭାଗ୍ୟ ମଧ୍ୟ ନାହିଁ । ତାହାର

ବନ୍ଧୁବର୍ଗଙ୍କ ଭିତରୁ ଶ୍ରଦ୍ଧେୟ ରେଭେନ୍‌ସା ସାହେବ ମଧ୍ୟ ଇହଜଗତରୁ ଅନ୍ତର୍ହିତ ହୋଇ ଅଛନ୍ତି । ଯେଉଁ ବିଦେଶୀୟମାନେ ଶାସକରୂପେ ଆମ୍ଭମାନଙ୍କ ଦେଶକୁ ଆସିଅଛନ୍ତି, ସେମାନଙ୍କ ମଧ୍ୟରୁ ଉତ୍କଳ ବନ୍ଧୁ ରେଭେନ୍‌ସା ସାହେବଙ୍କ ନାମ ଚିର ସ୍ମରଣୀୟ । ଯେ କୌଣସି ସ୍ଥାନରେ ହେଉ ନା କାହିଁକି ଯେଉଁ ବ୍ୟକ୍ତି ଓଡ଼ିଆ ଭାଷା ଓ ଓଡ଼ିଆ ଜାତି ପ୍ରତି ସଦୟ ସେ ଆମ୍ଭମାନଙ୍କ ଭକ୍ତି ଓ କୃତଜ୍ଞତାର ପାତ୍ର । ଉତ୍କଳର ଯେ କୌଣସି ଅଂଶରେ ହେଉ, ଯେଉଁମାନେ ଓଡ଼ିଆ ପ୍ରତି ସାଦର ସହାନୁଭୂତି ପ୍ରକାଶ କରୁଅଛନ୍ତି ବା କରିଅଛନ୍ତି ସେମାନେ ଓଡ଼ିଆ ଜାତିର ପ୍ରକୃତ ବନ୍ଧୁ । ପୂର୍ବେ ଜନ୍‌ବିମସ ସାହେବ ସାହିତ୍ୟ କ୍ଷେତ୍ରରେ ଓଡ଼ିଆମାନଙ୍କ ପାଇଁ ଯାହା କରିଯାଇଥିଲେ, ଶିକ୍ଷାପ୍ରସାର ଓ ଆର୍ଥିକ ଉନ୍ନତି ନିମନ୍ତେ ତାହା ରେଭେନ୍‌ସା ସାହେବ କରିଅଛନ୍ତି । ମହାଦୁର୍ଭିକ୍ଷ ନଅଙ୍କ ସମୟରେ ରେଭେନ୍‌ସା ସାହେବ ଓଡ଼ିଶାର କମିଶନର ଥିଲେ । ୧୩ ବର୍ଷ କାଳ ସେ କମିଶନର ରୂପେ କାର୍ଯ୍ୟ କରି ଓଡ଼ିଶାର ସକଳ ପ୍ରକାର ଭବିଷ୍ୟତ ଉନ୍ନତିର ମୂଳଭିତ୍ତି ସ୍ଥାପନ କରିଥିଲେ । ତାଙ୍କ ପ୍ରତିଷ୍ଠିତ ରେଭେନ୍‌ସା କଲେଜ ହେତୁ ଓଡ଼ିଶାରେ ଉଚ୍ଚ ଇଂରେଜୀ ଶିକ୍ଷାର ପ୍ରସାର । ଯେତେବେଳେ ଓଡ଼ିଆ ଭାଷା ଉଠିଯାଇ ତାହା ବଦଳରେ ବଙ୍ଗଳା ଭାଷା ପ୍ରଚଳିତ ହେବାର ପ୍ରସ୍ତାବ ହୋଇଥିଲା ରେଭେନ୍‌ସା ସାହେବ ସେତେବେଳେ ନିର୍ଭୀକ ଭାବରେ ଓଡ଼ିଆ ଭାଷାର ପକ୍ଷ ସମର୍ଥନ କରିଥିଲେ । ତାଙ୍କର ମତାନୁକୂଲ୍ୟରେ ଓଡ଼ିଶାରେ ଆମ୍ଭମାନଙ୍କ ସ୍ୱଭାଷାର ମହତ୍ତ୍ୱ ଓ ଅସ୍ତିତ୍ୱ ରହିଲା । କଟକର ପ୍ରିଣ୍ଟିଂ କୋମ୍ପାନୀ ଛାପାଖାନା ତାଙ୍କ ସାଧୁ ଉଦ୍ୟମର ଫଳ । କଟକର ବାଳିକା ବିଦ୍ୟାଳୟ ପ୍ରଭୃତି ନାନାବିଧ ଶିକ୍ଷା ଅନୁଷ୍ଠାନ ତାଙ୍କ ଉଦ୍ୟମରେ ପ୍ରତିଷ୍ଠିତ । ସ୍ଥୂଳରେ କହିଲେ ବର୍ତ୍ତମାନ ଓଡ଼ିଶାର ସକଳ ପ୍ରକାର ଉନ୍ନତି ମୂଳରେ ରେଭେନ୍‌ସା ସାହେବଙ୍କ ଯତ୍ନ ଓ ଉଦ୍ୟମ ବିଦ୍ୟମାନ । ଓଡ଼ିଆମାନେ ତାଙ୍କ ଭାଷାର ଅସ୍ତିତ୍ୱ ନିମନ୍ତେ ରେଭେନ୍‌ସା ସାହେବଙ୍କଠାରେ ଋଣୀ । ଓଡ଼ିଶା ଛାଡ଼ି ଗଲେ ସୁଦ୍ଧା ଆମ-ମାନଙ୍କର ହିତଚିନ୍ତା ତାଙ୍କ ହୃଦୟରେ ଜାଗରୁକ ଥିଲା । ଦୁଇ ବା ତିନି ବର୍ଷ ପୂର୍ବେ ଓଡ଼ିଆଙ୍କ ଶିକ୍ଷୋନ୍ନତି ନିମନ୍ତେ ସେ ଏକ ସହସ୍ର ଟଙ୍କା ପଠାଇ ଦେଇଥିଲେ । ଏ ଶ୍ରେଣୀର 'ମା ବାପ' ଶାସନକର୍ତ୍ତା ଆଜିକାଲି କ୍ୱଚିତ୍ ଦେଖାଯାନ୍ତି । ପ୍ରଜାମାନଙ୍କ ପ୍ରତି ମାୟା ମମତା ପ୍ରକାଶ କରି ତାଙ୍କ ହୃଦୟ

କଣିନେବା ଭଳି ଶାସନ କର୍ମଚାରୀ ଖୋଜି ପାଇବା ସହଜ ନୁହେଁ । ଅନ୍ୟାନ୍ୟ ମହାପୁରୁଷଙ୍କ ପରି ରେଭେନ୍‌ସା ସାହେବ ନିଜ ସ୍ମୃତି ନିଜେ ଗଢ଼ି ଯାଇଅଛନ୍ତି । କାଳକ୍ରମେ ଉକ୍ତ ସ୍ମୃତିର ଉତ୍ତରୋତ୍ତର ବୃଦ୍ଧି ହେଉଅଛି । ରେଭେନ୍‌ସା ସାହେବଙ୍କ ସ୍ମୃତି ଓଡ଼ିଆଙ୍କ ହୃଦୟରେ ସଦା ଜାଗରୂକ ଥିବ । ତାଙ୍କ ନିଜକୃତ ସ୍ମୃତିଚିହ୍ନ ଅପେକ୍ଷା ଓଡ଼ିଆମାନେ ଉନ୍ନତତର ସ୍ମୃତିର ବ୍ୟବସ୍ଥା କରିବା ସମ୍ଭବପର ନୁହେଁ । ସ୍ୱଚ୍ଛ ଏବଂ ପବିତ୍ର ହୃଦୟର ସରଳ ଭକ୍ତିବ୍ୟଞ୍ଜକ କୌଣସି ଉପାୟରେ ସମ୍ମିଳିତ ସମଗ୍ର ଓଡ଼ିଆ ଜାତି ଏକ ସମୟରେ ତାଙ୍କ ପ୍ରତି ଆନ୍ତରିକ ସ୍ନେହ ଓ କୃତଜ୍ଞତା ଦେଖାଇ ପାରିଲେ ଓଡ଼ିଆମାନେ ନିଜକୁ ଧନ୍ୟ ଓ କୃତାର୍ଥ ମନେ କରନ୍ତେ । ତାହାର ଅଭାବରେ ଆମ୍ଭେମାନେ ବର୍ତ୍ତମାନ ସେହି ସମୂହ ଭକ୍ତିର ସୂଚନା ଏହି ସମ୍ମିଳନୀରେ ଦେଖାଇବାକୁ ବସିଅଛୁ । ସମ୍ମିଳନୀରେ ରାଜନୈତିକ ଓଡ଼ିଶାର ଜଣେ ବନ୍ଧୁଙ୍କ ବିୟୋଗରେ ଦୁଃଖପ୍ରକାଶ କରି ହେଉଅଛି । ଏଥିରୁ ସ୍ପଷ୍ଟ ଜଣା ହେଉଅଛି ଯେ ଓଡ଼ିଆର ଜାତୀୟ ପ୍ରାଣ ଅଖଣ୍ଡ ଓ ଅବିଚ୍ଛିନ୍ନ । ଯେ କୌଣସି ଅଞ୍ଚଳର ସୁଖ ଦୁଃଖରେ ସମଗ୍ର ଓଡ଼ିଆ ଜାତି ସୁଖ ଦୁଃଖ ଅନୁଭବ କରୁଅଛି । ଓଡ଼ିଆ ହୃଦୟରେ ଏହି ସ୍ୱାଭାବିକ ଅନୁଭୂତି କୌଣସିରେ ଶାସନ ଭେଦନୀତି ଦ୍ୱାରା ଅନ୍ତରୀୟ ହୋଇ ଛିଡ଼ା ହୋଇପାରୁ ନାହିଁ, ଏହା ଚିହ୍ନି ରଖିବା ଦରକାର ।

ଭାଷାସୂତ୍ରରେ ଓଡ଼ିଆମାନେ ଏକଶାସନାଧୀନରେ ରହିବା ବାଞ୍ଛନୀୟ, ଏହା ସେମାନେ ଅନେକ ଦିନରୁ କହି ଆସୁଅଛନ୍ତି । କୌଣସି କୃତ୍ରିମ ରୀତିରେ ଏହି ଭାଷା ମିଳନର ଅନ୍ତରାୟ ହେଲେ ତାହା ସମାଜର ହିତକାରକ ହୁଏ ନାହିଁ । ଏହି କଥା ଆମ୍ଭମାନଙ୍କର ମହାଶୟ ବଡ଼ଲାଟ ଲର୍ଡ ହାର୍ଡ଼ିଞ୍ଜ ତାହାଙ୍କର ୨୬ ତାରିଖ ଅଗଷ୍ଟ ସନ ୧୯୧୧ର ସୁପ୍ରସିଦ୍ଧ ଉଲ୍ଲେଖରେ ପ୍ରତିପାଦନ କରି ଅଛନ୍ତି ।

ଭାଷା, ଜାତି, ପୂର୍ବପରମ୍ପରା ଇତ୍ୟାଦିରେ ଯେଉଁମାନେ ଏକ ଓ ଅବିଚ୍ଛିନ୍ନ, ସେମାନେ ଏକା ପ୍ରାଦେଶିକ ଶାସନାଧୀନ ହୋଇ ରହିବା ବାଞ୍ଛନୀୟ । ଏହି ମତ ଆମ୍ଭମାନଙ୍କର ସଦାଶୟ ବଡ଼ଲାଟ ଲର୍ଡ ହାର୍ଡ଼ିଞ୍ଜ ଦେଖାଇ ଅଛନ୍ତି । ପୁଣି ଏହି ସୂତ୍ରରେ ପ୍ରତ୍ୟେକ ପ୍ରାଦେଶିକ ଶାସନର

ସ୍ୱାତନ୍ତ୍ୟ ମର୍ଯ୍ୟାଦିତ ଓ ସଂରକ୍ଷିତ ହେବାର ସେ ସୂଚନା ଦେଇଅଛନ୍ତି । ବଙ୍ଗାଳିମାନଙ୍କ ଚିତ୍କାର କମ୍ବା ରାଜନୈତିକ ଦୁର୍ବିନୀତତା ଫଳରେ ବଙ୍ଗର ପୁନର୍ମିଳନ ହୋଇ ନାହିଁ । ତାଙ୍କର ଏହି ସିଦ୍ଧାନ୍ତ ଏକ ଉନ୍ନତ ରାଜନୀତି ଉପରେ ପ୍ରତିଷ୍ଠିତ ବୋଲି ମୋହର ଆନ୍ତରିକ ଧାରଣା । ପ୍ରାଦେଶିକ ଶାସନ ସ୍ୱାତନ୍ତ୍ୟ ଭାରତବାସୀଙ୍କ ପକ୍ଷେ ପ୍ରଧାନ ଆକାଙ୍‌କ୍ଷାର କଥା । ଲର୍ଡ ହାର୍ଡିଞ୍ଜଙ୍କ ଶାସନରେ ସମସ୍ତ ଘଟଣାବଳୀ ସେହି ଦିଗକୁ କ୍ରମେ ଅଗ୍ରସର ହେଉଅଛି, ଏଥିରେ କୌଣସି ସନ୍ଦେହ ନାହିଁ । ଦିଲ୍ଲୀ ବୋମା ଆଘାତ, କାନପୁର ଗୋଳମାଳ, କୋମାଗାଟାମାରୁ ପ୍ରକରଣ, ଦକ୍ଷିଣ ଆଫ୍ରିକାରେ ଭାରତବାସୀଙ୍କ ସମସ୍ୟା ଇତ୍ୟାଦିରେ ଲର୍ଡ ହାର୍ଡିଞ୍ଜ ଯେଉଁ ଉଦାରତା ଓ ହୃଦୟବତ୍ତା ଦେଖାଇଅଛନ୍ତି, ତାହା ଭାରତ ଇତିହାସରେ ଚିର ସ୍ମରଣୀୟ ହୋଇ ରହିବ । ତାଙ୍କ ଶାସନ କାଳରେ ସେ ଯେଉଁସବୁ ନୀତି ପ୍ରବର୍ତ୍ତନ କରିଅଛନ୍ତି, ଶାସକ ଓ ଶାସିତମାନଙ୍କ ମଧ୍ୟରେ ଯେଉଁ ସହାନୁଭୂତି ସାହଚର୍ଯ୍ୟ ସଂସ୍ଥାପନର ଚେଷ୍ଟା କରି ଅଛନ୍ତି ସେ ସବୁର ଫଳ କ୍ରମେ ଭାରତରେ ଫଳିବ ଏବଂ ଦେଶବାସୀମାନେ କ୍ରମେ ଉନ୍ନତ ହେବେ । ସେ ଯେଉଁ ଶାସନ ସଂସ୍କାରର ସୂତ୍ରପାତ କରିଅଛନ୍ତି, ତାହା କାର୍ଯ୍ୟକାରୀ ହେବାପାଇଁ କେତେକ କାଳ ଲାଗିବ । ଅତଏବ ତାଙ୍କର ଶାସନକାଳ ବଢ଼ାଇବା ପାଇଁ କେତେକ ଦିନ ପୂର୍ବେ ଯେଉଁ ଆନ୍ଦୋଳନ ହୋଇଥିଲା ସେଥିରେ ଓଡିଆମାନଙ୍କର ସମ୍ପୂର୍ଣ୍ଣ ସହାନୁଭୂତି ଅଛି ବୋଲି ମୋହର ବିଶ୍ୱାସ । ଅନ୍ୟାନ୍ୟ ଭାରତୀୟ ଜାତିଙ୍କ ସହ ଓଡ଼ିଆମାନେ ସାଧାରଣ ଭାବରେ ଲର୍ଡ ହାର୍ଡିଞ୍ଜଙ୍କ ଉଦାର ଶାସନର ସୁଫଳ ଭୋଗ କରୁଅଛନ୍ତି । କେବଳ ସେଥି ନିମନ୍ତେ ନୁହେ, ଓଡ଼ିଆମାନେ ଲର୍ଡ୍ ହାର୍ଡିଞ୍ଜଙ୍କଠାରେ କୃତଜ୍ଞ ରହିବାର ବିଶେଷ କାରଣ ଅଛି । ଏଥିପୂର୍ବେ କୌଣସି ବଡ଼ଲାଟ ଓଡିଶାର ରାଜଧାନୀରେ ପଦାର୍ପଣ କରି ନଥିଲେ । ଲର୍ଡ୍ ହାର୍ଡିଞ୍ଜଙ୍କ ସମୟରେ ଓଡିଆମାନେ ତାଙ୍କ ରାଜଧାନୀରେ ପ୍ରବଳ ପ୍ରତାପ ସମ୍ରାଟ ପ୍ରତିନିଧିଙ୍କ ଅଭ୍ୟର୍ଥନା ଓ ଅଭିନନ୍ଦନ କରିବାକୁ ସମର୍ଥ ହୋଇଥିଲେ । ଏହି କାରଣରୁ ଓଡ଼ିଆମାନେ ବଡ଼ଲାଟଙ୍କଠାରେ ଚିର କୃତଜ୍ଞ । ଓଡିଆମାନେ ଆଶା କରନ୍ତି ଯେ, ବଡ଼ଲାଟ ମହୋଦୟ ତାଙ୍କ ଅଳ୍ପକାଳ ଅବସ୍ଥାନରେ ହିଁ ତା ଓଡିଆଙ୍କ ବ୍ୟକ୍ତିତ୍ୱ ଓ ବିଶେଷତ୍ୱ ସମ୍ବନ୍ଧରେ କିଛି ଅନୁଭୂତି ସଂଗ୍ରହ କରିପାଇଅଛନ୍ତି । କଟକ ନଗରେ ପ୍ରତି ତାଙ୍କର ଶୁଭାଗମନ ଘଟଣା ଓଡ଼ିଆ-ମାନଙ୍କ ଇତିହାସରେ ଜଡିତ ରହିବ । କାର୍ଯ୍ୟକାଳ ବୃଦ୍ଧି ହେବା ନିମନ୍ତେ

ଓଡ଼ିଆମାନେ ଉଦ୍‌ବେଗପୂର୍ଣ୍ଣପ୍ରାଣରେ ଆଶା କରୁଅଛନ୍ତି । ଦୁଃଖର ବିଷୟ ଏପରି ମହାନ୍ ସଦାଶୟ ବ୍ୟକ୍ତିଙ୍କର ଜମାନ୍ୟୁଗରେ ଦୁଇଟିଗୋଟି ଶୋକର ଘଟଣା ହୋଇଯାଇଅଛି । ତାଙ୍କ ପତ୍ନୀ ବିୟୋଗରେ ଯେଉଁ ଦୁଃଖ ହୋଇଥିଲା ତାହା ତାଙ୍କ ପୁତ୍ର ନିଧନରେ ଦ୍ୱିଗୁଣିତ ହୋଇଅଛି । ଭଗବାନ୍ ତାଙ୍କ ଶୋକସନ୍ତପ୍ତ ହୃଦୟରେ ଶାନ୍ତିବାରି ସେଚନ କରନ୍ତୁ । ଓଡ଼ିଆମାନେ ତାଙ୍କର ଏହି ଦୁଃଖରେ ଦୁଃଖୀ, ଏହା ଉଲ୍ଲେଖ କରିବା ବାହୁଲ୍ୟ ମାତ୍ର ।

ଏହା ଲର୍ଡ ହାର୍ଡିଞ୍ଜଙ୍କ ପରି ଉଦାର ଉନ୍ନତମନା ଶାସନକର୍ତ୍ତାଙ୍କ ସମୟରେ ସମ୍ଭବ ହୋଇପାରେ । ଓଡ଼ିଆମାନଙ୍କ ଅବସ୍ଥା ସେ ଉତ୍ତମ ରୂପେ ହୃଦୟଙ୍ଗମ କଲେ ଏବଂ ତାଦୃଶ ଅବସ୍ଥା ପ୍ରଜାଙ୍କ ପକ୍ଷେ ଓ ଶାସନ ପକ୍ଷେ ଶ୍ରେୟସ୍କର ନୁହେଁ ବୋଲି ସେ ଥରେ ଜାଣିପାରିଲେ । କୌଣସି ପ୍ରାଦେଶିକ ଶାସନ କର୍ତ୍ତୃପକ୍ଷଙ୍କ ଆପତ୍ତି ଅଥବା ସ୍ୱାର୍ଥପର ଲୋକମାନଙ୍କ ଚିତ୍କାର ପ୍ରତି ଭ୍ରୂକ୍ଷେପ ନ କରି ତାଙ୍କ ପ୍ରବର୍ତ୍ତିତ ଭାଷାସୂତ୍ରରେ ଭ୍ରାତୃସଂଯୋଗ ନୀତିବିଚ୍ଛିନ୍ନ ଓଡ଼ିଆମାନଙ୍କ ପ୍ରତି ପ୍ରୟୋଗ କରିବେ ବୋଲି ମୋହର ସମ୍ପୂର୍ଣ୍ଣ ବିଶ୍ୱାସ ଅଛି । ଓଡ଼ିଆମାନେ ନିଜ ବ୍ୟକ୍ତିତ୍ୱ ଲୋପର ଆଶଙ୍କା କରୁଥିବାରୁ ସେମାନଙ୍କର ଉକ୍ତ ଆଶଙ୍କା ନିରାକରଣ ନିମନ୍ତେ ସେମାନଙ୍କୁ ବଙ୍ଗଳାରୁ ପୃଥକ୍ ରଖାଯିବା ଆବଶ୍ୟକ ବୋଲି ଗଭର୍ଣ୍ଣମେଣ୍ଟ ତାଙ୍କର ଗତ ଡେସ୍ପାଚରେ ଉଲ୍ଲେଖ କରିଥିଲେ । କେବଳ ବଙ୍ଗଳାରୁ ପୃଥକ୍ ରହିବା ଦ୍ୱାରା ସେମାନଙ୍କ ଆଶଙ୍କା ନିରାକରଣ ହେବ କି ? ପ୍ରବଳ ଜାତିଙ୍କ ନିଷ୍ପେଷଣ ଓ ନିର୍ଯାତନରେ, ଆଧିପତ୍ୟ ଓ ଆକ୍ରମଣରେ ଆଜି ଲକ୍ଷ ଲକ୍ଷ ଓଡ଼ିଆଙ୍କ ବ୍ୟକ୍ତିତ୍ୱ ଓ ସଂରକ୍ଷଣ ଆଶା ବହୁ ଦୂରକୁ ଚାଲିଯାଇ ନାହିଁକି ? ତାଙ୍କର ମାତୃଭାଷା ନାନା ଭାବରେ ବିକୃତ, ଦୂଷିତ ହେଉ ନାହିଁକି ? ଆକୃତି, ପ୍ରକୃତି, ଆଚାର, ବ୍ୟବହାର, ଭାଷା, ଭାବ ଇତ୍ୟାଦି ସକଳ ବିଷୟରେ ଭାରତର ଅନ୍ୟାନ୍ୟ ଜାତିଙ୍କଠାରୁ ଓଡ଼ିଆମାନେ ପୃଥକ୍ ବୋଲି ବଡ଼ ବଡ଼ ଶାସନକର୍ମଚାରୀ ଏବଂ ଘଟଣା ବାରମ୍ବାର ଗଭର୍ଣ୍ଣମେଣ୍ଟ ମଧ୍ୟ ଘୋଷଣା କରି ଆସିଛନ୍ତି । ଓଡ଼ିଆଙ୍କର ଏହି ପାର୍ଥକ୍ୟ ଓ ସ୍ୱାତନ୍ତ୍ର୍ୟ ରକ୍ଷା କରିବା ଗଭର୍ଣ୍ଣମେଣ୍ଟଙ୍କ କର୍ତ୍ତବ୍ୟ ନୁହେଁ କି ? ବଙ୍ଗରୁ ବିଚ୍ଛିନ୍ନ ରହିବା ମାତ୍ରକେ ଓଡ଼ିଆମାନଙ୍କର ଏହି ସ୍ୱାତନ୍ତ୍ର୍ୟ ରକ୍ଷା ବିଧାନ ସମ୍ପୂର୍ଣ୍ଣ ହେଲା କି ? ମାନ୍ଦ୍ରାଜ ଅନ୍ତର୍ଗତ ଓଡ଼ିଆ ପ୍ରଦେଶ, ଜୟପୁର

କି ଗଞ୍ଜାମ ଏହା ପ୍ରକୃତରେ ଓଡ଼ିଶାର ଏକ ଅବିଚ୍ଛିନ୍ନ ଅଂଶ । ପ୍ରାୟ ସମସ୍ତ ଗଞ୍ଜାମ ଜିଲ୍ଲା ଓ ଜୟପୁର ଓଡ଼ିଆ ରାଜାମାନଙ୍କ ଦ୍ୱାରା ଅଧିକୃତ ଏବଂ ଓଡ଼ିଆ ଲୋକଙ୍କଦ୍ୱାରା ଅଧ୍ୟୁଷିତ ହେଲେ ସୁଦ୍ଧା ଦୁଃଖର ବିଷୟ କ୍ଷମତାଶାଳୀ ତେଲିଙ୍ଗମାନଙ୍କ ପ୍ରଭାବରେ ଓଡ଼ିଆ ଶକ୍ତି ଏକାବେଳେ ମ୍ରିୟମାଣ ହୋଇଅଛି । ଓଡ଼ିଆ ଆଜି ମୁଣ୍ଡ ଟେକି ସ୍ଥଳପାରୁ ନାହିଁ । ବିଦ୍ୟାଳୟରେ, ଅଫିସରେ ରାଜକାର୍ଯ୍ୟରେ ଓଡ଼ିଆ ଏକପ୍ରକାର ବର୍ଜିତ । ଓଡ଼ିଆ ଛାତ୍ର, ନିଜ ଜାତୀୟଭାଷା, ଅଧ୍ୟୟନ, ନିଜ ଜାତୀୟ ସାହିତ୍ୟ ଚର୍ଚ୍ଚାରୁ ବଞ୍ଚିତ । ରାଜଦ୍ୱାରରେ ଓଡ଼ିଆ ଅବହେଳିତ ଓ ଅପମାନିତ । ଜନ୍ମଭୂମିର ଅବସ୍ଥା ଶୋଚନୀୟ । ଓଡ଼ିଆ ଦେଶ ଆଜି ଖଣ୍ଡବିଖଣ୍ଡିତ । ଏଥିରେ ଓଡ଼ିଆ କିପରି ତାହାର ପାର୍ଥକ୍ୟ ରକ୍ଷିପାରିବ ? ପ୍ରାୟ ଦଶବର୍ଷ ହେଲା ଓଡ଼ିଆମାନେ ଏହି ବିଚ୍ଛିନ୍ନ ଉତ୍କଳ ପ୍ରଦେଶର ଏକୀକରଣ ନିମନ୍ତେ ଆନ୍ଦୋଳନ କରିଆସୁଛନ୍ତି । ସଭାସମିତି ହୋଇ ଯାଇଅଛି, ନିବେଦନ ଆବେଦନର ବିରାମ ନାହିଁ; କିନ୍ତୁ ଦୁଃଖର ବିଷୟ—ସରକାର ବାହାଦୁର ନିଶ୍ଚଳ ହୋଇ ରହିଅଛନ୍ତି । ସେଦିନ ସମ୍ବଲପୁର ମଧ୍ୟପ୍ରଦେଶର ଅନ୍ତର୍ଗତ ଥିବାରୁ ଯେ ଅସହ୍ୟ ଅସୁବିଧା ଭୋଗ କରୁଥିଲା, ତାହା ଆପଣମାନଙ୍କର ସ୍ମୃତିର ଅଜ୍ଞାତ ନୁହେଁ । କେତେକ କାଳଯାଏ ସେମାନେ କଠୋର ନିର୍ଯ୍ୟାତନା ଓ ନିଷ୍ପେଷଣ ଭୋଗ କରିଥିଲେ ତାହା ପାସୋର ହୋଇ ନାହିଁ । ଆଜିଯାଏଁ ମେଦିନୀପୁର ଅଞ୍ଚଳର ଓଡ଼ିଆମାନେ ବଙ୍ଗଳା ଅକ୍ଷରରେ ଜଗନ୍ନାଥ ଦାସଙ୍କ ଭାଗବତ ରଖୁଅଛନ୍ତି । ଉନ୍ନତ ବଙ୍ଗ ସଂସ୍କୃତ ସଂଶ୍ଳିଷ୍ଟ ଥାଇ ମେଦିନୀପୁର ଓଡ଼ିଆଙ୍କର କିଛି ଅଭିବୃଦ୍ଧି ହୋଇପାରି ନାହିଁ । ଯେଉଁମାନେ କହନ୍ତି, ଉନ୍ନତତର ଜାତିମାନଙ୍କ ସଂସ୍ରବ ଜାତି ପକ୍ଷରେ ଶ୍ରେୟସ୍କର, ସେମାନେ ଏଥିର କି ଉତ୍ତର ଦେବେ ? ଏପରି ଭାବରେ ସବଳ ଜାତିଙ୍କ ଆଧିପତ୍ୟରେ ଜୀବନ ଯାପନ କଲେ ଆତ୍ମବିସ୍ମୃତି ଘଟିବ ନାହିଁ କି ? ଏହି ଆତ୍ମବିସ୍ମୃତି ରୂପ ରୋଗ ଥରେ ଆକ୍ରମଣ କଲେ ଜାତିର ଆଉ ଗତ୍ୟନ୍ତର ରହିବ ନାହିଁ । ମେଦିନୀପୁରର କାନ୍ଥି ଅଞ୍ଚଳରେ ଓଡ଼ିଆଙ୍କ ଦୁରବସ୍ଥା ଶୀଘ୍ର ନିରାକରଣ ହେବାର ନୁହେଁ । କୌଣସି ବ୍ୟକ୍ତି ବା ସମାଜ ବଳହୀନ ହେଲେ ତାହାର ଆତ୍ମବୋଧ ରହେ ନାହିଁ । ଆଜି ମେଦିନୀପୁର ଅଞ୍ଚଳସ୍ଥ ଓଡ଼ିଆମାନେ ନିବାସିତ ପ୍ରାୟ ଓଡ଼ିଆ ଦେଶର ବାହାରରେ ପଡ଼ିଅଛନ୍ତି । ଶାସନସମ୍ପର୍କ ବିଚ୍ଛେଦ ହେବା ସଙ୍ଗେ ସଙ୍ଗେ ଅନ୍ୟ

ଓଡ଼ିଆଙ୍କ ସହ ସେମାନଙ୍କ ସାମାଜିକ ବନ୍ଧନ ଶିଥିଳ ହୋଇ ଯାଉଅଛି । ସେହି ପ୍ରଦେଶସ୍ଥ ଓଡ଼ିଆଙ୍କର କିପରି ସଙ୍ଗଚ୍ୟୁତି ହେବ, ସେମାନେ କିପରି ନିଜ ଜାତିର ଲୋକଙ୍କୁ ଚିହ୍ନିବେ ଏବଂ ତାଙ୍କ ପିତୃପିତାମହଙ୍କ ପ୍ରତି ଗୌରବରେ ତାଙ୍କ ଇତିହାସରେ ଶ୍ରଦ୍ଧାପ୍ରକାଶ କରିବେ, ଏହା ସମ୍ମିଳନୀର ଗୋଟିଏ ବିଶିଷ୍ଟ କାର୍ଯ୍ୟ ହେବା ଉଚିତ ବୋଲି ମୁଁ ମନେକରେ । ସେମାନଙ୍କୁ ବୁଝାଇଦେବାକୁ ହେବ, ଓଡ଼ିଆ ଜାତିର ଇତିହାସ ଅଛି, ଗୌରବ ଅଛି । ପୁରୀ, କୋଣାର୍କ, ଭୁବନେଶ୍ୱର ଯେଉଁ ଓଡ଼ିଆ ହସ୍ତର ନୈପୁଣ୍ୟ, ବୁଦ୍ଧିର ବିଚକ୍ଷଣତା, ହୃଦୟର ପ୍ରଶସ୍ତତାର ପରିଚୟ ଦେଉଅଛି, ସେ ଓଡ଼ିଆର ଶକ୍ତି, ତାହାର ବ୍ୟକ୍ତିତ୍ୱ ଲୋପ ହେବ ନାହିଁ । ଓଡ଼ିଆ ବୋଲି ପରିଚୟ ଦେବାରେ ସେମାନଙ୍କର ଅପମାନ-ଲଜ୍ଜାର କିଛି କାରଣ ନାହିଁ । ବର୍ତ୍ତମାନ ଓଡ଼ିଆ ପାଲିଙ୍କି ବାହକ ହୋଇପାରେ; କିନ୍ତୁ ତାହାର ପୂର୍ବପୁରୁଷମାନେ ତ ପାଲିଙ୍କି ପରିବର୍ତ୍ତରେ ଦେଉଳର ଯେଉଁସବୁ ପ୍ରସ୍ତର ଉତ୍ତୋଳନ କରିପାରି ଅଛନ୍ତି, ତାହା ଦେଖି ଆଧୁନିକ ଯୁଗ ମଧ୍ୟ ଆଶ୍ଚର୍ଯ୍ୟରେ ଅବାକ୍ ହେଉଅଛି । ସେହି ଓଡ଼ିଆଙ୍କର ବଂଶଧର ବୋଲି ପରିଚୟ ଦେବାକୁ ଲଜ୍ଜା କାହିଁକି ? ଆମ୍ଭମାନଙ୍କୁ ଗଭର୍ଣ୍ଣମେଣ୍ଟଙ୍କ ଦ୍ୱାରସ୍ଥ ହେବା ସଙ୍ଗେ ସଙ୍ଗେ ଦେଶରେ ଦେଶମିଶ୍ରଣ ସମ୍ବନ୍ଧେ ନ୍ୟାୟସଙ୍ଗତ ଓ ଆଇନାନୁମୋଦିତ ଆନ୍ଦୋଳନ କରିବାକୁ ହେବ । ଯେଉଁମାନେ ବୁଝି ନାହାନ୍ତି ସେମାନଙ୍କୁ ବୁଝାଇବାକୁ ହେବ, ପ୍ରତି ଗ୍ରାମରେ ପ୍ରତି ସହରରେ ଏହି ଦେଶମିଶ୍ରଣ ଆନ୍ଦୋଳନର ସୂତ୍ରପାତ କରିବାକୁ ହେବ । ଏହି ଆନ୍ଦୋଳନ କେତେକ ଶିକ୍ଷିତ ବ୍ୟକ୍ତିଙ୍କ ମଧ୍ୟରେ ଆବଦ୍ଧ ନାହିଁ, ଏହା ଓଡ଼ିଆର ସରଳ ସ୍ୱାଭାବିକ ଆକାଙ୍କ୍ଷା । ଏବଂ ଓଡ଼ିଆର ଘରେ ଘରେ ଦେଶମିଶ୍ରଣ ଆଶା ଉଦ୍ରେକ ହୋଇଅଛି, ଏହିକଥା ସରକାର ଜାଣନ୍ତୁ; ପ୍ରତ୍ୟେକ ଯାଇ ଏହି ଆନ୍ଦୋଳନ ଦୃଢ଼ୀଭୂତ କରନ୍ତୁ; ଦେଖିବେ ଲୋକଙ୍କର ପ୍ରାର୍ଥନା ସରକାର ଅଗ୍ରାହ୍ୟ କରିବେ ନାହିଁ । ଯୁକ୍ତି ଅକାଟ୍ୟ ହେଉ ପଛକେ, ତାହାର ପଶ୍ଚାତ୍‌ଦେଶରେ ଲୋକସମୂହର ଆର୍ତ୍ତନାଦ ସମର୍ଥନ କରିବାକୁ ନ ଥିଲେ ଯେ କୌଣସି ବିଷୟ 'ଅବାଞ୍ଛନୀୟ ଓ ଅନାବଶ୍ୟକ' ବୋଲି ସରକାର କହିଦେଇ ପାରନ୍ତି । ସମ୍ମିଳନୀ ରାଜନୈତିକ ଅନୁଷ୍ଠାନ ନୁହେଁ । ଅତଏବ ଭିନ୍ନ ଭିନ୍ନ ଶାସନରେ ରହିଥିବାରୁ ଓଡ଼ିଆଙ୍କ ଶାସନ ସମ୍ବନ୍ଧୀୟ ଯେ ଅଭାବ ଅଭିଯୋଗ ଅଛି ସେ ସକଳର ଆଲୋଚନା ମୁଁ ଏଠାରେ କରିବାକୁ ପ୍ରସ୍ତୁତ

ନୁହେଁ; କିନ୍ତୁ ସ୍ଥୂଳଭାବରେ ଏତିକି ଜଣାଇପାରେ ଯେ, ଶାସନ ସମ୍ପର୍କୀୟ ଅନେକ ତ୍ରୁଟି, ଅନେକ ପ୍ରକାର ଅସନ୍ତୋଷ ଦେଶମିଶ୍ରଣ ହେଲେ ଆଉ ରହନ୍ତା ନାହିଁ । ସରକାର ଯାହା କହନ୍ତୁ, ଗଞ୍ଜାମର ତେଲେଙ୍ଗା ଭାଇମାନେ ଯାହା କହନ୍ତୁ, ରକ୍ତର ଆକର୍ଷଣ କଦାପି ଶିଥିଳ ହେବାର ନୁହେଁ । ଯେଉଁ-ମାନଙ୍କର ପ୍ରାଣର ଆଶା, ଭରସା, ଆଚାର, ବ୍ୟବହାର, ସାମାଜିକ ରୀତିନୀତି ବହୁଶତାବ୍ଦୀର ଇତିହାସରେ ଦୃଢ଼ଭାବରେ ଗଠିତ ଓ ଗ୍ରଥିତ ହୋଇ ଆସିଅଛି, ସେମାନଙ୍କୁ ବିଚ୍ଛିନ୍ନ ରଖିବା ପ୍ରକୃତିର ବିରୁଦ୍ଧାଚରଣ ମାତ୍ର । ଭାରତ ପରି ମହାଦେଶର ପ୍ରାଦେଶିକ ଜାତୀୟ ବ୍ୟକ୍ତିତ୍ୱ ଏକ ଭାଷାଭାଷୀ ଭୂମିଖଣ୍ଡରେ ସୀମାବଦ୍ଧ ନ ହେଲେ ପ୍ରାଦେଶିକ ଜାତୀୟ କଲ୍ୟାଣ ତଥା ଭବିଷ୍ୟତରେ ଭାରତୀୟ ମହାଜାତୀୟତାର ଆଶା ସୁଦୂରପରାହତ ହେବ । ସରକାର ଯେ ଏହି କଥା ବୁଝି ନାହାନ୍ତି, ତାହା ନୁହେଁ । ଏହି ଉଦ୍ଦେଶ୍ୟରେ ପଣ୍ଡିତପ୍ରବର ଗ୍ରୀଏରସନ୍ ସାହେବ ଭାରତର ସମସ୍ତ ସ୍ଥାନ ନିଜେ ଦେଖି ଭାଷା ଭିତ୍ତିରେ ପ୍ରାଦେଶିକତା ସ୍ଥିର କରି ଭାରତର ଗୋଟିଏ ନୂତନ ମାନଚିତ୍ର ସୃଷ୍ଟି କରିଅଛନ୍ତି । ଓଡ଼ିଆଭାଷୀ ବୋଲି ଗ୍ରୀଏରସନ ସାହେବ ଯେଉଁ ଭୂଭାଗ ନିର୍ଣ୍ଣୟ କରିଅଛନ୍ତି, ତାହା ଓଡ଼ିଆଙ୍କର ଅଭିପ୍ରାୟ ସମ୍ପୂର୍ଣ୍ଣରୂପେ ସମର୍ଥନ କରୁଅଛି । ଗ୍ରୀଏରସନ୍ ମାନଚିତ୍ର ପାଖରେ ପକାଇ ଓଡ଼ିଆଙ୍କ ଆବେଦନ ଆଲୋଚନା କଲେ ସରକାର ଦେଖିବେ ଯେ, ତାଙ୍କ ଦାବୀ କୌଣସି ପ୍ରକାର ଅପ୍ରାକୃତ ଓ ଅସମୀଚୀନ ନୁହେ । ରାଜା ପ୍ରଜା ସମସ୍ତେ ଏକ ସ୍ୱରରେ ଏହି ମିଳନ ପ୍ରାର୍ଥନା କରିଅଛନ୍ତି । ପାରଳାର ସ୍ୱର୍ଗୀୟ ପଦ୍ମନାଭ ନାରାୟଣ ଦେବ ଏହି ମିଳନ ଆକାଙ୍କ୍ଷା ପୋଷଣ କରିଥିଲେ । ବଳରାମ ମହାରଣାଙ୍କଠାରୁ ଆରମ୍ଭ କରି ନରସିଂହ ଦାସଙ୍କ ପର୍ଯ୍ୟନ୍ତ ସମସ୍ତେ ଏହି ମିଳନ ପାଇଁ ବ୍ୟାକୁଳ ଥିଲେ । କବି ମଧୁସୂଦନ ଏହି ମିଳନର 'ଶୁଭ ଶଙ୍ଖଧ୍ୱନି' ବଜାଇଅଛନ୍ତି । ଚେଷ୍ଟା କଲେ ଏହି ମିଳନ ଯେ ଦିନେ ସମ୍ପୂର୍ଣ୍ଣ ସିଦ୍ଧ ହେବ, ଏଥିରେ ସନ୍ଦେହର କାରଣ କିଛି ନାହିଁ । ନୂତନ ଆଶାରେ ପ୍ରାଣକୁ ଉଜ୍ଜୀବିତ ରଖି କାର୍ଯ୍ୟକ୍ଷେତ୍ରରେ ପ୍ରବେଶ କରିବାକୁ ହେବ । ସମ୍ବାଦ-ପତ୍ରମାନେ ଏ ବିଷୟରେ ସର୍ବଦା ଆନ୍ଦୋଳନ କରନ୍ତୁ ଏବଂ ଲୋକେ ଏହି ମିଳନ ପାଇ ବ୍ୟାକୁଳତା ଦେଖାନ୍ତୁ । କବି ଏହି ମିଳନ କବିତା ଲେଖନ୍ତୁ, ବକ୍ତା ଏହି ମିଳନ ବକ୍ତୃତା ଦିଅନ୍ତୁ, ଦେଖିବେ ଏହି ହୃଦୟର ଆବେଗପୂର୍ଣ୍ଣ

ଆକାଙ୍କ୍ଷା ସରକାର ଦିନେ ପୂରଣ କରିବେ ଏବଂ ଭଗବାନ୍ ଆମ୍ଭମାନଙ୍କର ନିଶ୍ଚୟ ସହାୟ ହେବେ ।

କିନ୍ତୁ ନିଜ ଗୋଡ଼ରେ ଛିଡ଼ାହେବାକୁ ନ ଶିଖିଲେ ବାହାରର ଯେତେ ସାହାଯ୍ୟ ଓ ଅବଲମ୍ବନ ଦେଉ ନା କାହିଁକି ଉଦ୍ଧାର କିଛି ହେବ ନାହିଁ । ସ୍ୱାବଲମ୍ବନଶୀଳ ବ୍ୟକ୍ତିର ନିଜେ ଭଗବାନ ସହାୟ ହୁଅନ୍ତି । ପ୍ରଥମେ କୌଣସି ବିଷୟରେ ଯୋଗ୍ୟ ନ ହେଲେ ଅପରର ଦୟାଦାକ୍ଷିଣ୍ୟ, ସାହାଯ୍ୟ ସହାନୁଭୂତି କିଛି କାର୍ଯ୍ୟକାରୀ ହେବ ନାହିଁ । ଅତଏବ ଆମ୍ଭ ଜାତି ଅନ୍ୟାନ୍ୟ ଜାତିଙ୍କ ସମାସନାସୀନ ହେବାକୁ ହେଲେ ପ୍ରଥମତଃ ସେମାନଙ୍କ ପରି ଯୋଗ୍ୟ ହେବାକୁ ହେବ । ଏହି ଯୋଗ୍ୟତା ସମ୍ପାଦନ ପାଇଁ ଯେତେଗୁଡ଼ିଏ ଉପକରଣ ଆବଶ୍ୟକ, ତନ୍ମଧ୍ୟରେ ଶିକ୍ଷା ସର୍ବ ପ୍ରଥମ ଓ ସର୍ବପ୍ରଧାନ ।

ଶିକ୍ଷାବର୍ଜ୍ଜିତ ହେଲେ ଆମ୍ଭେମାନେ ସଭ୍ୟ ହେବାର ତେଣିକି ଥାଉ କ୍ରମେ ପଶୁତ୍ୱ ପ୍ରାପ୍ତ ହେବାର ଆଶଙ୍କା ପୂର୍ଣ୍ଣମାତ୍ରାରେ ଅଛି । ଓଡ଼ିଆ ଜାତି ପୂର୍ବକାଳରେ ଶିକ୍ଷାଦୀକ୍ଷାରେ ପ୍ରବୀଣ ଥିଲା । ହୃଦୟକୁ ଉନ୍ନତ କରିବା, ମନୁଷ୍ୟର ଦେବତା ସୁଲଭଗୁଣ ବିକାଶ କରିବା ଏବଂ ମନକୁ ସଂସ୍କାର କରିବା ଯେ କୌଣସି ଶିକ୍ଷାର ଉଦ୍ଦେଶ୍ୟ । ଯେଉଁ ଭାଷାରେ, ଭାବରେ ଦିଆଯାଉ ଶିକ୍ଷାର ପ୍ରଧାନ ଲକ୍ଷ୍ୟ ମନୁଷ୍ୟତା ପ୍ରାପ୍ତି । ପୂର୍ବକାଳରେ ଓଡ଼ିଆମାନେ ଏହି ମନୁଷ୍ୟତା ପ୍ରାପ୍ତି ନିମନ୍ତେ ଯେ ଶିକ୍ଷିତ ହେଉଥିଲେ, ଏହାର ଭୂରି ଭୂରି ପ୍ରମାଣ ମିଳୁଥିଲା । କିନ୍ତୁ ଆଧୁନିକ ଯୁଗରେ ସେମାନଙ୍କ ଶିକ୍ଷାର ଅବସ୍ଥା କଅଣ ? ସେମାନେ ନବ୍ୟ ଶିକ୍ଷାର ବହୁଦୂରରେ ପଡ଼ିଅଛନ୍ତି ଏବଂ ପୁରାତନ ଯାହା ଟିକିଏ ଥିଲା, ତାହା ମଧ୍ୟ ଲୋପ ପାଇଅଛି । ଅବଧାନ ଚାହାଳୀ ଦେଖିବାକୁ ନାହିଁ କି ସ୍କୁଲ କଲେଜର ମଧ୍ୟ ଯଥେଷ୍ଟ ଅଭାବ ନାହିଁ । ଏପରି ଜାତଟା ନ ଘରେ ନ ଘାଟରେ ହୋଇ ପଡ଼ିଅଛି । କୌଣସି ଲୋକକୁ ସାକ୍ଷର କରିବା ମାତ୍ରେ ଶିକ୍ଷା ଦିଆଗଲା ବୋଲିବୁଝାଯିବ ନାହିଁ । ଭାରତବର୍ଷ ଭିତରୁ ଓଡ଼ିଶାରେ ଯେତେ ସାକ୍ଷର ବ୍ୟକ୍ତି ଅଛନ୍ତି, ବୋଧହୁଏ ଅନ୍ୟ କୌଣସି ପ୍ରଦେଶରେ ନାହାନ୍ତି । ଏହି କଥା ସରକାର ରିପୋର୍ଟମାନଙ୍କରୁ ମଧ୍ୟ ଜଣାଯାଏ । ଏହା ମଧ୍ୟ ଆଧୁନିକ ଶିକ୍ଷା ବିସ୍ତାର ଚେଷ୍ଟାର ଫଳ ବୋଲି ବୋଧହୁଏ

ନାହିଁ । ଉତ୍କଳରେ ଯେଉଁ ସବୁ ଅବଧାନ ଚଟଶାଳୀ ଚୌପାଠୀର ବ୍ୟବସ୍ଥା ଥିଲି ଏବଂ ବର୍ତ୍ତମାନ ଉଠିଯାଇଅଛି, ତାହା ଫଳରେ ଦେଶରେ ଅସ୍ପୃଶ୍ୟ ଜାତିର ଲୋକମାନେ ମଧ୍ୟ ଭାଗବତ ପଢ଼ିବା ଭଳି ସାକ୍ଷର ହୋଇଥିଲେ । କିନ୍ତୁ ବର୍ତ୍ତମାନ ଯେଉଁ ସବୁ ଶିକ୍ଷା ସଂସ୍କାର ପ୍ରବେଶ କଲାଣି ସେଥିରେ ଓଡ଼ିଶାର ଏହି ପୂର୍ବସ୍ଥିତି ଆଉ ଅଧିକ ଦିନ ସଂକାଶେ ରହିବ କି ନାହିଁ ସନ୍ଦେହର ବିଷୟ । ଅଧିକାଂଶ ସାକ୍ଷର ବୋଲି ଯଦି ଧରାଯାଏ, ତାହା ହେଲେ ମଧ୍ୟ ଜାତି ଶିକ୍ଷିତ ବୋଲି କୁହାଯିବ ନାହିଁ । ବର୍ତ୍ତମାନ ଆମ୍ଭ ଦେଶରେ ଯେ ଶିକ୍ଷାନୁଷ୍ଠାନର ଅଭାବ ଅଛି, ଏଥିରେ କୌଣସି ଦ୍ୱିରୁକ୍ତି ହୋଇ ନ ପାରେ । ଜୟପୁର ବିଶାଖାପଟ୍ଟଣ ଅଞ୍ଚଳର ଓଡ଼ିଆପ୍ରଧାନ ସ୍ଥଳମାନଙ୍କରେ ଓଡ଼ିଆ ପ୍ରାଥମିକ ବିଦ୍ୟାଳୟର ଏକାନ୍ତ ଅଭାବ ପରିଲକ୍ଷିତ ହେଉଅଛି । ସେହିଠାରେ ଓଡିଆ ପରିବର୍ତ୍ତେ ଓଡ଼ିଆ ବାଳକମାନେ ତେଲୁଗୁ ଶିଖିବାକୁ ବାଧ୍ୟ ହେଉଅଛନ୍ତି । ଏଥିପ୍ରତି ସରକାର କିମ୍ବା ଲୋକଙ୍କର ଦୃଷ୍ଟି ଅଦ୍ୟାବଧି ପଡ଼ି ନାହିଁ । ପାଦ୍ରି ମିସନାରୀମାନେ ଯାହା କରୁଅଛନ୍ତି, ତାହା ବାଦଦେଲେ ଓଡିଆ ଶିକ୍ଷା ପ୍ରଚାର ନିମନ୍ତେ ସେହି ଅଞ୍ଚଳରେ କୌଣସି ଉତ୍ସାହ, କୌଣସି ଉଦ୍ୟମ ନାହିଁ । ଏହିପରି ଚତୁର୍ଦ୍ଦିଗରେ ଶିକ୍ଷାର ଅଭାବ ପରିଲକ୍ଷିତ ହେଉଅଛି । ଏପରି ଅବସ୍ଥାରେ କେଉଁ ପ୍ରଣାଳୀର ଶିକ୍ଷା ଦିଆଯିବା ଉଚିତ, ଏହି ବିଷୟର ଆଲୋଚନାରେ ନିବୃତ୍ତ ହେଲେ କି ଲାଭ ହେବ ? ଶିକ୍ଷା ତ ନାହିଁ, ସେଥିର ପ୍ରଣାଳୀ ନିରୂପଣ ପାଇଁ ଏତେ ବ୍ୟାକୁଳତା କାହିଁକି ? ତଥାପି କେବଳ ଶିକ୍ଷାର ପରିମାଣ ପ୍ରତି ଦୃଷ୍ଟି ଦେଲେ ଚଳିବ ନାହିଁ । କ୍ଷୁଧାରେ ପ୍ରପୀଡ଼ିତ ବୋଲି ଏଣୁ ତେଣୁ ଆହାର ଯୋଗାଇଲେ ଚଳିବ ନାହିଁ । ଖାଦ୍ୟ ଏପରି ହେବା ଉଚିତ, ଯଦ୍ଦ୍ୱାରା ରକ୍ତବୃଦ୍ଧି ହେବ, ଅଙ୍ଗ ସବଳ ଓ ସତେଜ ହେବ । ତାହା ନ ହେଲେ ଅଜୀର୍ଣ୍ଣ ରୋଗରେ ଆକ୍ରାନ୍ତ ହେବା ଅସମ୍ଭବ ନୁହେଁ । ଶିକ୍ଷାର ପ୍ରକୃତି ପ୍ରତି ଦୃଷ୍ଟି ନ ଦେଲେ ତାହା ଅଶିକ୍ଷାଠାରୁ ଭୟଙ୍କର ହୋଇ ଉଠିବ ଏବଂ ଜାତି ମାନସିକ ଅଜୀର୍ଣ୍ଣ ରୋଗରେ ଗ୍ରସ୍ତ ହେବା ବିଚିତ୍ର ନୁହେଁ । ଏହି କଥା ଆମ୍ଭ ଦେଶରେ ବିଶ୍ୱବିଦ୍ୟାଳୟଠାରୁ ଆରମ୍ଭ କରି ସାଧାରଣ ଗ୍ରାମୀୟ ବୋର୍ଡ଼ ପାଠଶାଳା ପର୍ଯ୍ୟନ୍ତ ସକଳ ସ୍ଥାନରେ ପ୍ରଯୁଜ୍ୟ ।

ସବୁ କଥା ପରି ଶିକ୍ଷାର ମଧ୍ୟ ଗୋଟିଏ ଆଦର୍ଶ ରଖିବାକୁ ହେବ । ସେ ଆଦର୍ଶ ଜାତିର ପାରିପାର୍ଶ୍ୱିକ ଅବସ୍ଥା, ଜାତିର ପୂର୍ବପରମ୍ପରାର ଅନୁକୂଳ

ହେବା ଆବଶ୍ୟକ । ଏକ କଥାରେ ଆଦର୍ଶ ଏପରି ହେବା ଉଚିତ ଯେ, ତାହା ଗ୍ରହଣ କରି ତଦ୍ଦ୍ବାରା ଅନୁପ୍ରାଣିତ ହୋଇ ଜାତି ଉପରକୁ ଉଠିପାରିବ । ବର୍ତ୍ତମାନ ଓଡ଼ିଆଙ୍କର ଭାଗ୍ୟରେ ଦୁଇଟୋଟି ବିଶ୍ୱବିଦ୍ୟାଳୟ ପଡ଼ିଅଛି । ଆଉ କେତେଦିନ ପରେ ପାଟଣା ବିଶ୍ୱବିଦ୍ୟାଳୟ ମଧ୍ୟ ସ୍ଥାପିତ ହେବ । ଗୋଟିଏ ଜାତି ତିନିଗୋଟି ବିଶ୍ୱବିଦ୍ୟାଳୟରେ ବିଭକ୍ତ ହୋଇ ଶିକ୍ଷିତ ହେଲେ ଜାତିର ଗୋଟିଏ ଆଦର୍ଶ ରହିବ କି ? ଅନ୍ୟ ବିଷୟମାନଙ୍କରେ ଯେପରି ଶିକ୍ଷାରେ ମଧ୍ୟ ସେପରି ଏକ (Common standard) ସମାନ ପ୍ରଣାଳୀ ଓ ଆଦର୍ଶ ରହିବା ଆବଶ୍ୟକ । ମାନ୍ଦ୍ରାଜ ଅଞ୍ଚଳରେ ବିଶ୍ୱବିଦ୍ୟାଳୟରେ ସଂସ୍କୃତକୁ ଯେ ସ୍ଥାନ ଦିଆଯାଇଅଛି କଲିକତାରେ ତାହା ନୁହେଁ । ଜଣେ କଟକର ଗ୍ରାଜୁଏଟ ଜଣେ ଗଞ୍ଜାମର ଗ୍ରାଜୁଏଟଙ୍କ ଅପେକ୍ଷା ସଂସ୍କୃତରେ ଅଧିକ ପାରଦର୍ଶୀ ଓ ମାତୃଭାଷାରେ ଅଧିକ ପ୍ରବୀଣ । ଏହିପରି ଯେ ପାର୍ଥକ୍ୟ ଅନ୍ୟତ୍ର ରହୁନାହିଁ, ଏହା କହିବା ମୋହର ଅଭିପ୍ରେତ ନୁହେଁ । କିନ୍ତୁ ଏକ ଜାତି ନିମନ୍ତେ ଏକ ବିଶ୍ୱବିଦ୍ୟାଳୟ, ଏକ ଆଦର୍ଶ, ଏକ ଶିକ୍ଷାପ୍ରଣାଳୀ ଅଧିକତର ଉପଯୋଗୀ ଓ ସ୍ୱାସ୍ଥ୍ୟକର ବୋଲି ମୋହର ଧାରଣା । କିନ୍ତୁ ଏହା କେତେଦୂର ସମ୍ଭବ ସରକାର ଓ ବ୍ୟକ୍ତିମାନଙ୍କର ଆଲୋଚନାର ବିଷୟ । କେତେ ଦିନ ପୂର୍ବେ ଧର୍ମକୋଟର ମାନ୍ୟବର ରାଜାସାହେବ ସମସ୍ତ ଓଡ଼ିଆଭାଷୀ ପ୍ରଦେଶର ଶିକ୍ଷାନୁଷ୍ଠାନଗୁଡ଼ିକ ଏକ ଶିକ୍ଷାକର୍ତ୍ତୃପକ୍ଷଙ୍କ ଅଧୀନରେ ରହିବା ବାଞ୍ଛନୀୟ ବୋଲି ବ୍ୟବସ୍ଥାପକ ସଭାରେ ଯେଉଁ ପ୍ରସ୍ତାବ ଉତ୍ଥାପନ କରିଥିଲେ, ତାହା ଗୃହୀତ ହେଲେ ଅନେକାଂଶରେ ଶିକ୍ଷାର ଏକ ଆଦର୍ଶ ଓ ସମାନ ହୋଇପାରେ ।

ଶିକ୍ଷାର ଆଦର୍ଶ ସମ୍ବନ୍ଧେ କହୁଁ କହୁଁ ସତ୍ୟବାଦୀର ଆଦର୍ଶ ହାଇସ୍କୁଲ କଥା ମନେ ପଡ଼ିଲା । ସତ୍ୟବାଦୀ ସ୍କୁଲ ମୁଁ ଦେଖି ନାହିଁ; କିନ୍ତୁ ଲୋକମୁଖରେ ଓ ସମ୍ବାଦପତ୍ରାଦି ଦ୍ୱାରା ତାହାର ପରିଚୟ ପାଇପାରିଅଛି । ତ୍ୟାଗର ଜ୍ୱଳନ୍ତ ଆଦର୍ଶ ଦେଖାଇ ସତ୍ୟବାଦୀ ସ୍କୁଲର ପ୍ରତିଷ୍ଠାତାମାନେ ଏହି ନୂତନ ସ୍କୁଲ ନୂତନ ଧରଣରେ, ନୂତନ ଆଦର୍ଶରେ ଚଳାଉଅଛନ୍ତି । ଶୁଣିପାରିଅଛି, ସେଠାରେ ସେମାନେ 'ମନୁଷ୍ୟ ଗଢ଼ୁଅଛନ୍ତି' । ଶିକ୍ଷକମାନେ ପ୍ରାଚୀନ ପୁରାଣ କଥିତ ଆଚାର୍ଯ୍ୟାଦିର କାର୍ଯ୍ୟ କରୁଅଛନ୍ତି । ଶିକ୍ଷକ ଆଚାର୍ଯ୍ୟ

ନ ହେଲେ, ଅର୍ଥାତ୍ ଶିକ୍ଷା ଆଚରଣରେ ପରିଣତ ନ ହେଲେ ତାହାର ଫଳ କିଛି ହୁଏ ନାହିଁ । ମନୁଷ୍ୟତା ପ୍ରାପ୍ତି ନିମିତ୍ତ ସେମାନେ ଛାତ୍ରମାନଙ୍କୁ ଯେଉଁ ମାର୍ଗରେ ଚଳାଉଥିବାର ଜଣାଯାଏ, ତାହା ସର୍ବଥା ଅନୁକରଣୀୟ । ଆମ୍ଭମାନଙ୍କ ଦେଶରେ ଏହିପରି ସ୍କୁଲର ସଂଖ୍ୟା, ଏପରି ସ୍ୱାର୍ଥତ୍ୟାଗୀଙ୍କ ସଂଖ୍ୟା ବୃଦ୍ଧି ହେଉ ଏବଂ ସତ୍ୟବାଦୀର ଉଚ୍ଚ ଉଜ୍ଜ୍ୱଳ ଆଦର୍ଶରେ ଦେଶର ଶିକ୍ଷାନୁଷ୍ଠାନସକଳ ଗଠିତ ହେଉ, ଏହା ମୋର ଆନ୍ତରିକ ଇଚ୍ଛା ଏବଂ ଭଗବାନ ଏହି ସ୍କୁଲର ଅନୁଷ୍ଠାତାମାନଙ୍କ କାର୍ଯ୍ୟରେ ସହାୟ ହୁଅନ୍ତୁ, ଏହାହିଁ କାମନା ।

ସିଂହଭୂମି ଅଞ୍ଚଳରେ ଓଡ଼ିଆ ଶିକ୍ଷା ପ୍ରଚାରର ଯେପରି ଅଭାବ ଅଛି, ଗଞ୍ଜାମ ବିଶାଖାପାଟଣରେ ମଧ୍ୟ ତଦ୍ରୂପ । ସିଂହଭୂମିରେ ଯେପରି ଓଡ଼ିଆ ଶିକ୍ଷକଙ୍କ ଅଭାବ ଅଛି, ଏହି ଅଞ୍ଚଳରେ ମଧ୍ୟ ସେହିପରି ଅଭାବ ରହିଅଛି । ଏଥିପ୍ରତି ଗଭର୍ଣ୍ଣମେଣ୍ଟଙ୍କ ଶୁଭଦୃଷ୍ଟି ନ ପଡ଼ିଲେ ଓଡ଼ିଆଙ୍କର ଉନ୍ନତି ଆଶା ବିଡ଼ମ୍ବନା ମାତ୍ର । ତେଲୁଗୁମାନେ ଯେତେ ଶିକ୍ଷିତ ହୁଅନ୍ତୁ ସେମାନେ ଓଡ଼ିଆରେ ଶିକ୍ଷା ଦେଇପାରିବେ ନାହିଁ ଏବଂ ଓଡ଼ିଆ ଆଦର୍ଶ, ଓଡ଼ିଆର ବ୍ୟକ୍ତିତ୍ୱ ଓ ବିଶେଷତ୍ୱ ତେଲୁଗୁମାନେ ରକ୍ଷା କରିବେ ବା କିପରି ? ସମ୍ମିଳନୀ ଚେଷ୍ଟା କଲେ କେତେକ ଓଡ଼ିଆ ଶିକ୍ଷକ ଏ ଅଞ୍ଚଳକୁ ଆମଦାନୀ କରାଇ ପାରନ୍ତି । ସେଥିପାଇଁ ଗଞ୍ଜାମ ଓଡ଼ିଆ ସମାଜ ପ୍ରଭୃତି ଉଦ୍ୟମ କରୁଥିବାର ଜଣାଯାଏ । ଅନ୍ୟମାନଙ୍କୁ ସେହି କାର୍ଯ୍ୟରେ ସାହାଯ୍ୟ ଦେବାକୁ ହେବ । ଇସଲକୋଣ୍ଡାରେ ଓଡ଼ିଆ ହାଇସ୍କୁଲ ପ୍ରତିଷ୍ଠିତ ହୋଇଅଛି । ଏହା ଗଭର୍ଣ୍ଣମେଣ୍ଟଙ୍କ ବିଶେଷ ଅନୁକମ୍ପାର ଫଳ । ମୁଁ ସେଥିପାଇଁ ଲର୍ଡ ପେଣ୍ଟଲଣ୍ଡଙ୍କ ଗଭର୍ଣ୍ଣମେଣ୍ଟକୁ ଧନ୍ୟବାଦ ଦେଉଅଛି । ପରନ୍ତୁ ଓଡ଼ିଆ ଶିକ୍ଷକ ନିଯୋଗ ପ୍ରତି ବିଶେଷ ମନୋଯୋଗ ନ ଦେଲେ ସରକାର ଯେଉଁ ଉଦ୍ଦେଶ୍ୟରେ ଇସଲକୋଣ୍ଡାଠାରେ ହାଇସ୍କୁଲ ବସାଇ ଅଛନ୍ତି ସେହି ଉଦ୍ଦେଶ୍ୟ ଅପୂର୍ଣ୍ଣ ରହିବ । ଅନ୍ୟନ୍ୟ ଶିକ୍ଷକାଭାବ ପୂରଣ କରିବା ନିମିତ୍ତ ବ୍ରହ୍ମପୁର ଟ୍ରେନିଂ ସ୍କୁଲ ଉଚ୍ଚ ଗ୍ରେଡ ସ୍କୁଲରେ ପରିଣତ ହୋଇଅଛି । ଏହା ଅବଶ୍ୟ ଆନନ୍ଦର କଥା । ଆଶା କରାଯାଏ, ସରକାର ବାହାଦୂର ଜୟପୁର ପ୍ରତି ଶିକ୍ଷାର ସୁବିଧା କରିଅଛନ୍ତି । ଆମ୍ଭମାନଙ୍କର ସାହିତ୍ୟିକ ଅନୁଷ୍ଠାନଗୁଡ଼ିକ ମଧ୍ୟ ତଦ୍ରୂପ କରିବାକୁ ହେବ । ଜ୍ଞାନର ବିଭିନ୍ନ ବିଭାଗରେ ଭିନ୍ନ ଭିନ୍ନ ଧରଣର ପୁସ୍ତକମାନ

ପ୍ରକାଶ କରିବାକୁ ହେବ । ପୁରାତନ ସାହିତ୍ୟ ପ୍ରତି ଲୋକଙ୍କର ଆଗ୍ରହ ଓ ଆସ୍ଥା ଉଦ୍ରେକ କରି ଆଧୁନିକ ସାହିତ୍ୟ ଅନୁଶୀଳନରେ ମଣିକାଞ୍ଚନ ସଂଯୋଗର ଯତ୍ନ କରିବାକୁ ହେବ । ନୂତନ ଧରଣର ନବଯୁଗର ଉପଯୋଗୀ କବିତା ରଚନାରେ ୰ ରାଧାନାଥ ଯେଉଁ ମାର୍ଗ ଦେଖାଇ ଅଛନ୍ତି, ଗଦ୍ୟ ଲେଖାରେ ସ୍ୱର୍ଗୀୟ ମଧୁସୂଦନ ଯେଉଁ ପ୍ରତିପତ୍ତି ସଂସ୍ଥାପନ କରିଅଛନ୍ତି, ନାଟକ ପ୍ରଣୟନରେ ଶ୍ରୀଯୁକ୍ତ ରାମଶଙ୍କର ରାୟ ଯେଉଁ କୃତିତ୍ୱର ପରିଚୟ ଦେଇଅଛନ୍ତି, ଉପନ୍ୟାସରେ ଭକ୍ତକବି ଫକୀରମୋହନ ଉକ୍ତ ସାହିତ୍ୟର ଯେଉଁ ମାର୍ଗ ଦର୍ଶାଇଅଛନ୍ତି, ସେ ସମସ୍ତ ଆମ୍ଭ ଓଡ଼ିଆ ଜାତିକୁ ଏକପ୍ରକାର ଉଜ୍ଜୀବିତ କରି ରଖିଅଛି । ଓଡ଼ିଆ ଜାତି ବର୍ତ୍ତମାନ ଯୁଗରେ ଏମାନଙ୍କ ଲେଖାରୁ ତାଙ୍କର ମାନସିକ ଖାଦ୍ୟ ସଂଗ୍ରହ କରୁଅଛନ୍ତି । କିନ୍ତୁ ଗୋଟିଏ ପ୍ରକାଣ୍ଡ ଜାତି ନିମନ୍ତେ ଏକ କୋଟିରୁ ଅଧିକ ଓଡ଼ିଆ ଜୀବଙ୍କ ନିମନ୍ତେ ଏହି ଗୁଣିଜନଙ୍କ ଦ୍ୱାରା ବହୁ ଯତ୍ନରେ ସଞ୍ଚିତ ସୁମିଷ୍ଟ ଖାଦ୍ୟ ମଧ୍ୟ ଯଥେଷ୍ଟ ନୁହେଁ । ନାନାପ୍ରକାର ଗ୍ରନ୍ଥ, ବିଭିନ୍ନ ପ୍ରକାର ଉପନ୍ୟାସ, କାବ୍ୟ ନାଟକ ଆବଶ୍ୟକ । ବର୍ତ୍ତମାନ ସବୁ ବିଭାଗରେ ଅଭାବ । ଦୁଃଖର ବିଷୟ ଆଜିଯାଏ ଓଡ଼ିଆରେ ଖଣ୍ଡିଏ ଉଚ୍ଚ ଧରଣର ଅଭିଧାନ ସଙ୍କଳିତ ହୋଇ ନାହିଁ । ଏହି ପାରଳାର ପଣ୍ଡିତ ଶ୍ରୀ ଗୋପୀନାଥ ନନ୍ଦ ବହୁ ପରିଶ୍ରମ କରି ଖଣ୍ଡିଏ ଅଭିଧାନ ପ୍ରଣୟନ କରିଅଛନ୍ତି । ତାହା ଅଦ୍ୟାବଧି ପ୍ରକାଶ ହୋଇପାରି ନାହିଁ । ନିଜେ ସେ ପ୍ରଭୂତ ଉଦ୍ୟମ କଲେ । କେଉଁଥିରେ ନପାରି ଉକ୍ତଳ ସାହିତ୍ୟ ସମାଜ ହାତରେ ସେ କାର୍ଯ୍ୟଟି ଦେଇଅଛନ୍ତି । ସମାଜର ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ନ ଥିବାରୁ ଅଭିଧାନ ଖଣ୍ଡ ଛପା ହୋଇପାରି ନାହିଁ । ଆଶା କରାଯାଏ, ଆମ୍ଭମାନଙ୍କ ଜୀବନରେ ତାହା ଦେଖିବାକୁ ପାଇବୁଁ । ଆଜିଯାଏଁ ସାହିତ୍ୟ ସମାଜ କୌଣସି ଗ୍ରନ୍ଥ ପ୍ରକାଶ କରିଥିବା ମୁଁ ଜାଣି ନାହିଁ । ଅନ୍ତତଃ ଏହି ଅଭିଧାନ ଖଣ୍ଡି ଛପାଇଲେ ସମାଜର ଗୌରବ ବଢ଼ନ୍ତା । ଆନନ୍ଦର ବିଷୟ କେତେକ ରାଜା ଓଡ଼ିଆ ସାହିତ୍ୟ ଚର୍ଚ୍ଚାରେ ମନୋଯୋଗ ଦେଇଥିବାର ଆଭାସ ମିଳିଅଛି । ସେମାନେ ଯେ ଯାହା କ୍ଷେତ୍ରରେ କିଛି ନା କିଛି କରୁଅଛନ୍ତି, ଏହା ଅବଶ୍ୟ ଶୁଭର ଲକ୍ଷଣ ।

କରଣ, କ୍ଷତ୍ରିୟ, ବ୍ରାହ୍ମଣ ଇତ୍ୟାଦି ସମ୍ଭ୍ରାନ୍ତଙ୍କ ଘରେ ସ୍ତ୍ରୀମାନେ ଶିକ୍ଷା ପାଇଥିବାର ଶୁଣାଯାଇଥାଏ; କିନ୍ତୁ ସେମାନଙ୍କର ଅଧିକାଂଶ ସାକ୍ଷର ମାତ୍ର । ଅକ୍ଷର ଚିହ୍ନିବା ମାତ୍ରେ ସେମାନେ ଯେ ଶିକ୍ଷିତାଙ୍କ ମଧ୍ୟରେ ଗଣ୍ୟ ହେବେ,

ତାହା ନୁହେଁ । ନାରୀଗଣଙ୍କୁ ଏପରି ଶିକ୍ଷା ଦିଆଯିବା ଉଚିତ, ଯଦ୍ଦ୍ୱାରା ସେମାନେ ନାରୀ ସୁଲଭ ଦୟା ପ୍ରୀତି, ମାୟା, ମମତା, ଶୁଶ୍ରୂଷା ଇତ୍ୟାଦି ସଦ୍‌ଗୁଣ ପ୍ରତି ସମଧିକ ଆସ୍ଥାବତୀ ହେବେ ଏବଂ ମାନବସମାଜକୁ ସମଧିକ ସୁଖ, ଶାନ୍ତି ଓ ମଙ୍ଗଳ ଆନୟନ କରିବେ । ଆମ୍ଭେମାନେ ସ୍ତ୍ରୀଶିକ୍ଷା ପ୍ରତି ଯେଉଁ ଉଦାସୀନତା ଦେଖାଉଅଛୁଁ ତାହା ଦେଶପକ୍ଷରେ ଘୋର ଅମଙ୍ଗଳର ଲକ୍ଷଣ । ସ୍ତ୍ରୀଶିକ୍ଷା ପ୍ରତି ଉଦାସୀନତା ଯେପରି ନିନ୍ଦନୀୟ ଏବଂ କ୍ଷତିକାରକ, ସାହିତ୍ୟ ପ୍ରତି ଅସ୍ଥାବାନ ନ ହେବା ସେତିକି କ୍ଷୋଭର ବିଷୟ । ସୁଖାଦ୍ୟ ଯେପରି ଶରୀରକୁ ସବଳ, ସତେଜ କରେ, ସୁସାହିତ୍ୟ ସେପରି ଜାତିର ମାନସିକ ତେଜ ବିକାଶ କରେ । ଜାତିର ମସ୍ତିଷ୍କ ସତେଜ ନ ରହିଲେ ତାହାର ମଜ୍ଜାଗତ ଶକ୍ତି କ୍ଷୀଣ ହୋଇଯାଏ ଓ ଜାତି କ୍ରମେ ଦୁର୍ବଳ ହୋଇଉଠେ । ସର୍ବଦା ସର୍ବସମୟରେ ସାହିତ୍ୟିକମାନେ, କବି ଓ ଜାତିର ନେତା ହୋଇ ଥାଆନ୍ତି । ଅର୍ଥାତ୍ ମନ ଯେପରି ଶରୀରକୁ ଗଠନ କରେ ପ୍ରତିଭାଶାଳୀ ସାହିତ୍ୟିକମାନେ ସେପରି ଜାତିକୁ ଗଠନ କରିଥାନ୍ତି । ଆମ୍ଭମାନଙ୍କର ଏହି ମାନସିକ ଉନ୍ନତି ପାଇଁ ଜାତୀୟ ସାହିତ୍ୟର ଅଭିବୃଦ୍ଧି ନିମନ୍ତେ ବିଶେଷ ଭାବରେ ଯତ୍ନ କରିବା ନିତାନ୍ତ ଆବଶ୍ୟକ ମନେ କରେ । ଉନ୍ନତ ବଙ୍ଗ ଏହି କ୍ଷେତ୍ରରେ ଯାହା କରିଅଛି, ତାହା ଆମ୍ଭମାନଙ୍କର ସର୍ବତୋଭାବେ ଅନୁକରଣୀୟ । କେବଳ ବଙ୍ଗଳାରେ ସାହିତ୍ୟ ପରିଷଦ ଅଛି ବୋଲି ଆମ୍ଭେମାନେ ନାମରେ ମାତ୍ର ସାହିତ୍ୟ ସମାଜମାନ ସ୍ଥାପନ କଲେ ଚଳିବ ନାହିଁ । ଆନ୍ଧ୍ରମାନେ ଏହି କେତେକ ବର୍ଷ ମଧ୍ୟରେ ଯାହା କରୁଅଛନ୍ତି, ବର୍ତ୍ତମାନ ସେମାନଙ୍କର ଏକାଡେମୀ ଓ ସାହିତ୍ୟିକ ସଙ୍ଘମାନେ ତାହା ନିମନ୍ତେ ଏପରି କିଛି ସୁବନ୍ଦୋବସ୍ତ କରିବେ । ଗଞ୍ଜାମ ଓଡ଼ିଆମାନେ ଟିକିଏ ସଂଜ୍ଞାପ୍ରାପ୍ତ ହୋଇଅଛନ୍ତି । ସେମାନେ ନିଜ ଅଭାବ ଅସୁବିଧା କହିବାକୁ ଉଦ୍ୟମ କଲେଣି । କିନ୍ତୁ ଜୟପୁର, ସିଂହଭୂମି ଓଡ଼ିଆଙ୍କର ତାହା ମଧ୍ୟ ନାହିଁ । ଅତଏବ ସରକାର ବାହାଦୁର ଏହି ବିଭାଗମାନଙ୍କ ପ୍ରତି ବିଶେଷ ଦୃଷ୍ଟି ନ ଦେଲେ ଉନ୍ନତି ଅସମ୍ଭବ । ଯେଉଁଠାରେ ବାଳକମାନଙ୍କ ପ୍ରତି ଶିକ୍ଷାର ଏପରି ଅବସ୍ଥା, ସେଠାରେ ସ୍ତ୍ରୀଶିକ୍ଷା ସମ୍ବନ୍ଧେ ବିଶେଷ କହିବା ନିଷ୍ପ୍ରୟୋଜନ । କିନ୍ତୁ ଯେଉଁମାନେ ମନୁଷ୍ୟର ଅର୍ଦ୍ଧାଙ୍ଗ ସ୍ୱରୂପ ଗୃହୀତ ହୁଅନ୍ତି, ଯେଉଁମାନଙ୍କ ଉପରେ ଆମ୍ଭମାନଙ୍କ ପୁତ୍ରକନ୍ୟାଙ୍କ ଭବୀ ଜୀବନର ଭାର ରହିଅଛି, ସେମାନେ ପ୍ରକୃତ ମାତା, ପ୍ରକୃତ ଭଗିନୀ ଓ ପ୍ରକୃତ ପତ୍ନୀ ନ ହୋଇ ପାରିଲେ ଦେଶର ଉନ୍ନତି

କେଉଁଆଡ଼େ ହେବ ? ପକ୍ଷୀର ଗୋଟିଏ ଡ଼େଣା ବାନ୍ଧିଦେଇ ତାକୁ ଉଡ଼ିବାକୁ ଦେଲେ ସେ ଉଡ଼ିପାରିବ କି ? ସେହିପରି ଜାତିର ଏକେ ଗୁଡ଼ିଏ ପ୍ରାଣୀ ଶିକ୍ଷାବିହୀନ ହୋଇ ରହିଲେ ସେହି ଜାତିର ଉନ୍ନତି ଅସମ୍ଭବ । ପୂର୍ବକାଳରେ ହିନ୍ଦୁ ରମଣୀମାନେ ସୁଶିକ୍ଷିତା ଥିଲେ । ସୀତା, ସାବିତ୍ରୀ, ଦମୟନ୍ତୀ ହିନ୍ଦୁ-ଜାତିର ଚରମ ଦୃଷ୍ଟାନ୍ତ । ଲୀଳାବତୀଙ୍କ ପରି ବିଦ୍ୟାବତୀଙ୍କୁ ପାଇ ଯେ କୌଣସି ଦେଶ ଗର୍ବ କରିବ । କିନ୍ତୁ ସେସବୁ ପୁରାଣର କଥା ହୋଇଯାଉ ଅଛି । ପ୍ରାଚୀନକାଳର ରମଣୀଗଣଙ୍କ ପରିହିର ରମଣୀସୃଷ୍ଟି ଆଣିବାକୁ ଅନେକ କାଳ ଲାଗିବ । ପୁରାଣ କଥା ଛାଡ଼ନ୍ତୁ, ଓଡ଼ିଶାର କରଣକୁଳମଣ୍ଡନା ମାଧବୀ ଦାସୀଙ୍କ କଥା କିଏ ନ ଜାଣେ ? ଯେଉଁ ମହାତ୍ମା ଚୈତନ୍ୟ ଦେବ ନାରୀମୁଖ ଦର୍ଶନ କରିବେ ନାହିଁ ବୋଲି ପ୍ରତିଜ୍ଞା କରିଥିଲେ, ସେ ମାଧବୀଙ୍କ ଶିକ୍ଷାଦୀକ୍ଷାରେ ମୁଗ୍ଧ ହୋଇ ନିୟମଭଙ୍ଗ କରି ତାଙ୍କୁ ଦର୍ଶନ ଦେଇଥିବା ଶୁଣାଯାଏ । ଆଉ ଜଣେ ଏହି ଆଧୁନିକ ଯୁଗରେ ସାହିତ୍ୟଚର୍ଚ୍ଚା କରି ସଂସ୍କୃତ ପ୍ରଭୃତିରେ ନିପୁଣତାର ପରିଚୟ ଦେଇଅଛନ୍ତି । ରାଧା ନାମୀ ଧରାକୋଟର ଜଣେ ବ୍ରାହ୍ମଣ ଘରର ବିଧବା । ତାଙ୍କର ସେହି ଶିକ୍ଷାର ଆଦର ବର୍ତ୍ତମାନ ସ୍ତ୍ରୀସମାଜରେ କାହିଁ ? ସ୍କୁଲମାନ ଯଥେଷ୍ଟ ରୂପରେ ନ ହେଉ ବୋଲିବାକୁ ହେବ । ଭୋଜ ବିକ୍ରମାଦିତ୍ୟଙ୍କଠାରୁ ଆରମ୍ଭ କରି ସୁତଳ, ରାମଚନ୍ଦ୍ର ପର୍ଯ୍ୟନ୍ତ ରାଜାମାନଙ୍କ ଦ୍ୱାରା ଭାରତର ସଂସ୍କୃତ ତଥା ପ୍ରାଦେଶିକ ଭାଷାର ସାହିତ୍ୟ ପରିପୁଷ୍ଟ ହୋଇଆସିଥିବାର ଜଣାଯାଏ । ଓଡ଼ିଶା ନରପତି-ମାନଙ୍କ ମଧ୍ୟରୁ କେତେକଙ୍କଠାରେ ଏହି ସାହିତ୍ୟ ଅନୁରାଗ ଦେଖାଯାଏ, ଏହା ଅତି ଆନନ୍ଦର କଥା । ରାଜା ଏବଂ ଭୂସ୍ୱାମୀମାନେ ନିଜେ ସାହିତ୍ୟ-ଚର୍ଚ୍ଚା କରିବା ସଙ୍ଗେ ସଙ୍ଗେ ଅନ୍ୟାନ୍ୟ ଶକ୍ତିଶାଳୀ ସାହିତ୍ୟିକମାନଙ୍କୁ ଆର୍ଥିକ ଓ ଅନ୍ୟାନ୍ୟ ପ୍ରକାରେ ସାହାଯ୍ୟ ଦେଇ ସାହିତ୍ୟଚର୍ଚ୍ଚାର କ୍ଷେତ୍ର ବଢ଼ାଇଲେ ଆହୁରି ଭଲ ହୁଅନ୍ତା ।

ଆଜିକାଲି ଆମ୍ଭମାନଙ୍କ ଦେଶରେ ସଂସ୍କାର କରିବାକୁ କେତେକଙ୍କର ପ୍ରୟାସ ଦେଖାଯାଉଅଛି । କିନ୍ତୁ କାହିଁକି ଯେ ସଂସ୍କାର ଆବଶ୍ୟକ, ତାହା କେହି ସ୍ଥିର କଲା ପରି ଜଣାଯାଏ ନାହିଁ । ଦେଶର ବର୍ତ୍ତମାନ ଅବସ୍ଥାରେ ଆମ୍ଭମାନଙ୍କର ଆଚାର, ବ୍ୟବହାର, ସାମାଜିକ ରୀତିନୀତିରେ କୌଣସି ପରିବର୍ତ୍ତନ ଘଟାଇବା ସମୀଚୀନ ନୁହେଁ । ବରଂ ପୁରାତନ ପ୍ରୀତି ପ୍ରାଚୀନ

ସାମାଜିକ ରାଜନୀତି ପ୍ରତି ଲୋକଙ୍କର ଆସ୍ଥା ଓ ଆଗ୍ରହ ବଢ଼ାଇବା ଆବଶ୍ୟକ ବୋଲି ମୁଁ ମନେ କରେ । ଜାତିର ଯାହା ସମ୍ବଳ, ତାହା ଗ୍ରହଣ କରି କେବଳ ଅନୁକରଣର ପଶ୍ଚାଦ୍ଧାବନ କଲେ କିଛି ଫଳ ହେବ ନାହିଁ । ଏହାଦ୍ୱାରା ମୁଁ ପ୍ରକାଶ କରୁ ନାହିଁ ଯେ, ଆମ୍ଭମାନଙ୍କ ସମାଜରେ କୌଣସି ତ୍ରୁଟି ବା ଦୋଷ ନାହିଁ । କେଉଁ ସମାଜରେ ବା ତାହା ନାହିଁ ? ଆମ୍ଭମାନଙ୍କ ସମାଜ ପରି ପ୍ରାଚୀନ ସମାଜ ନାନା ଅବସ୍ଥା ଅତିକ୍ରମ କରି ଆସିଥିବାରୁ କାଳକ୍ରମେ ତହିଁରେ ସେପରି ଅନେକ ତ୍ରୁଟି ବା କୁସଂସ୍କାର ପ୍ରବେଶ କରିବା ସ୍ୱାଭାବିକ । ସେସବୁର ନିରାକରଣ ସର୍ବଦା ବାଞ୍ଛନୀୟ, କିନ୍ତୁ ତାହା କରିବାବେଳେ 'ଶନୈଃ ପନ୍ଥା ଶନୈଃ ପନ୍ଥା ଶନୈଃ ପର୍ବତଲଙ୍ଘନଂ' ନୀତି ଅବଲମ୍ବନ କରିବା ଶ୍ରେୟସ୍କର ।

ଏପରି ଦେଶର ଉନ୍ନତି ବିଧାୟକ ଅନ୍ୟାନ୍ୟ ବିଭାଗ ଅର୍ଥାତ୍ କୃଷି, ଶିଳ୍ପ, ବାଣିଜ୍ୟ ସମ୍ବନ୍ଧରେ ପୂର୍ବବର୍ତ୍ତୀ ସମ୍ମିଳନୀର ସଭାପତିମାନେ ବିଶେଷ ଭାବରେ କହିଦେଇ ଯାଇ ଅଛନ୍ତି । ସେ ସମସ୍ତର ଆନ୍ଦୋଳନ ବର୍ତ୍ତମାନ ନିଷ୍ପ୍ରୟୋଜନ । ଗୋଟାଏ ଜାତିକୁ ଉନ୍ନତି ପଥରେ ଅଗ୍ରସର କରାଇବାକୁ ତାହାର ଏହି ସମସ୍ତ ବିଭାଗ ଉତ୍କର୍ଷ ସମ୍ପାଦନ କରିବାକୁ ହେବ । କିନ୍ତୁ ଏହିସବୁ କାର୍ଯ୍ୟ ବର୍ଷକରେ ବା ଦଶ ବର୍ଷରେ ହେବନି ନାହିଁ ବୋଲି କ୍ଷୋଭ ପ୍ରକାଶ କରି କାର୍ଯ୍ୟକ୍ଷେତ୍ରରୁ ନିବୃତ୍ତ ହେଲେ ଚଳିବ ନାହିଁ । ଶତବର୍ଷବ୍ୟାପୀ ଉଦ୍ୟମ, ଆନ୍ଦୋଳନ ଆବଶ୍ୟକ । କଠୋର ସ୍ୱାର୍ଥତ୍ୟାଗ, ପ୍ରଭାବଶାଳୀମାନଙ୍କର ଶକ୍ତି ଓ ସାମର୍ଥ୍ୟ ବିନିଯୋଗ ଆବଶ୍ୟକ ।

ଉତ୍କଳର ସ୍ଥାନେ ସ୍ଥାନେ କୌଣସି କୌଣସି ବ୍ୟକ୍ତିବିଶେଷଙ୍କ କାର୍ଯ୍ୟରେ ଏହି ଜାତୀୟ କଲ୍ୟାଣ ନିମନ୍ତେ ଯେତେ ସାମାନ୍ୟ ହେଉ ପଛକେ, ଉତ୍ସାହ ଏବଂ ଆତ୍ମୋତ୍ସର୍ଗ ସମ୍ପ୍ରତି ଦେଖାଯିବା ବିଶେଷ ଆଶାପ୍ରଦ । ଲୋକଙ୍କ ମଧ୍ୟରେ ସମ୍ମିଳନୀ ଯେ ଏ ପ୍ରବୃତ୍ତି ଜାଗରଣ କରାଇ ନାହିଁ, ଏହା କୁହାଯାଇ ନ ପାରେ । ସମ୍ମିଳନୀ କ'ଣ କାର୍ଯ୍ୟ କଲା ବୋଲି ସମ୍ମିଳନୀ ଅଧିବେଶନ ପରେ ପଚାରିବା କିମ୍ବା ବର୍ଷକ ପରେ ଅନ୍ୟ ଅଧିବେଶନ ସମୟରେ ସେ ସମ୍ବନ୍ଧେ କେତେଗୁଡ଼ିଏ ନିରାଶ ବାଣୀ କହି ଖଡ଼ଗହସ୍ତ ହେବା ବିଶ୍ୱାସୀ ମାନବର କର୍ତ୍ତବ୍ୟ ନୁହେଁ । × × ×

ସମ୍ମିଳନୀ ଶେଷରେ ଧନ୍ୟବାଦ ପ୍ରସ୍ତାବ ଆଗତ କରି ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତି କହିଲେ—"ସଭାପତି ମହୋଦୟଙ୍କ ସଦ୍ ଗୁଣାବଳୀ ଆପଣମାନଙ୍କୁ ଅବିଦିତ ନୁହେ । ସେ ଏହି ମହାସଭାର କାର୍ଯ୍ୟାବଳୀ ଯେଉଁଳି ଦକ୍ଷତାର ସହ ଚଳାଇଛନ୍ତି, ସେଥିରୁ ତାହାଙ୍କର କାର୍ଯ୍ୟକାରିତାର ପରିଚୟ ମିଳୁଅଛି । ନାନାବିଧ ବୈଷୟିକ କାର୍ଯ୍ୟରେ ବ୍ୟସ୍ତ ଥିଲେ ସୁଦ୍ଧା ଆମ୍ଭମାନଙ୍କର ଅନୁରୋଧ ରକ୍ଷାକରି ଏହି ସମ୍ମିଳନୀର ଦାୟିତ୍ୱପୂର୍ଣ୍ଣ ସଭାପତି ଆସନ ଗ୍ରହଣ କରିଥିବାରୁ ତାହାଙ୍କୁ ମୁଁ ଆନ୍ତରିକ ଧନ୍ୟବାଦ ଅର୍ପଣ କରୁଅଛି ।"

'ଦୁଇଦିନ ସମ୍ମିଳନୀର ଦୁଇ ରାତ୍ରିରେ ସ୍ଥାନୀୟ ପଦ୍ମନାଭ ରଙ୍ଗାଳୟର ଅଭିନେତାମାନେ ପଦ୍ମନାଭ ନାରାୟଣ ଦେବଙ୍କ 'ବାଣ ଦର୍ପଦଳନ' ଓ ଆପଣା ପରିଚ୍ଛାଙ୍କ 'ବିଜୟ ବସନ୍ତ' ନାଟକ ଦୁଇଟି ମଞ୍ଚସ୍ଥ କରିଥିଲେ । ବୀରମଦେବ ବର୍ମା ଉଭୟ ନାଟକକୁ ଆମୂଳଚୂଳ ନିରୀକ୍ଷଣ କରି ପ୍ରଯୋଜକ ନାଟ୍ୟ ସଂସ୍ଥାକୁ ସ୍ୱର୍ଣ୍ଣପଦକ ପୁରସ୍କାର ଦେଇଥିଲେ ।

ଏହା ପରେ ପାରଳାଖେମୁଣ୍ଡିଠାରେ ଆହୁରି କେତେକ ସଭା ସମିତି ଆୟୋଜିତ ହୋଇଥିଲା । ପରଦିନ 'କେନ୍ଦ୍ରିକ ଉତ୍କଳ ଯୁବକ ସମ୍ମିଳନୀ' ସଭାରେ ବୀରମଦେବ ବର୍ମା ସଭାପତିତ୍ୱ କରିଥିଲେ । ଏହି ସଭା ଉତ୍କଳ ସମ୍ମିଳନୀ ମଞ୍ଚରେ ହିଁ ଅନୁଷ୍ଠିତ ହୋଇଥିଲା । ଏଥିରେ ସଭାପତି ଅଭିଭାଷଣ ପ୍ରସଙ୍ଗରେ ସେ କହିଲେ—ପ୍ରତିବର୍ଷ ଉତ୍କଳ ସମ୍ମିଳନୀ ଅଧିବେଶନ ପରେ ସେହି ମଞ୍ଚରେ ଯୁବକ ସମ୍ମିଳନୀ ଆୟୋଜିତ ହେବା ଉଚିତ । ଏହାଦ୍ୱାରା ଉତ୍କଳ ସମ୍ମିଳନୀ ଉଦ୍ୟୋକ୍ତାମାନଙ୍କ ମଧ୍ୟରେ ବେଳୁଁବେଳ ଯେଉଁ ସବୁ ଶୂନ୍ୟସ୍ଥାନ ସୃଷ୍ଟି ହୋଇଯାଇଛି ତାହା ପୂରଣ ହେବା ପାଇଁ ପରିବେଶ ଗଠିତ ହେବ । ତା' ପରଦିନ 'ବୈଷ୍ଣବ ସମ୍ମିଳନୀ' ଅନୁଷ୍ଠିତ ହୋଇଥିଲା । ଏ ସମ୍ମିଳନୀରେ ବୀରମଦେବ ବର୍ମା ଭଗବତ ଗୀତାର ବିଷୟବସ୍ତୁ କର୍ମଯୋଗ, ଜ୍ଞାନଯୋଗ ଓ ଭକ୍ତିଯୋଗ ସଂପର୍କରେ ସାରଗର୍ଭକ ଭାଷଣ ଦେଇ ଶ୍ରୋତାମାନଙ୍କୁ ଚମତ୍କୃତ କରି ଦେଇଥିଲେ । ଏହି ସଭା ପ୍ରାରମ୍ଭରେ ତାଙ୍କର 'ଭକ୍ତି ରତ୍ନମାଳା' ପୁସ୍ତକରୁ ଏକ ଗୀତକୁ ସ୍ୱାଗତ ସଂଗୀତ ଭାବେ ସ୍ଥାନୀୟ କଣ୍ଠଶିଳ୍ପୀମାନଙ୍କ ଦ୍ୱାରା ପରିବେଷଣ

କରାଯାଇଥିଲା । ଏଗୀତ ମଧ୍ୟରେ ଭଣ୍ଡସନ୍ନ୍ୟାସୀ ଓ ଦୁର୍ନୀତିଗ୍ରସ୍ତ ବାବାଜୀମାନଙ୍କୁ ଆକ୍ଷେପ କରା ଯାଇଥିବା ଯୋଗୁଁ ସମ୍ମିଳିତ ବୈଷ୍ଣବମାନଙ୍କ ମଧ୍ୟରୁ କେତେକ ଅପଦସ୍ତ ହେବାଭଳି ଜଣାଯାଇଥିଲା ।

ଉତ୍କଳ ସମ୍ମିଳନୀର ପାରଳାଖେମୁଣ୍ଡିକୁ ମିଶାଇ ସର୍ବମୋଟ ଦଶଟି ଅଧିବେଶନରୁ ଅଷ୍ଟମ ଅଧିବେଶନ ଯାଏଁ କେବଳ ରାଜା, ମହାରାଜାମାନେ ସଭାପତିତ୍ୱ କରିଥିଲେ । ପୁରୀଠାରେ ଅନୁଷ୍ଠିତ ନବମ ଅଧିବେଶନରେ ପ୍ରଥମ ଥର ପାଇଁ ଜଣେ ସାଧାରଣ ନାଗରିକ ମଧୁସୂଦନ ଦାସ ସଭାପତିତ୍ୱ କଲେ । ଏ କ୍ଷେତ୍ରରେ ବ୍ୟତିକ୍ରମ ଭାବେ ପାରଳାଖେମୁଣ୍ଡି ଦଶମ ଅଧିବେଶନରେ ବିକ୍ରମଦେବ ବର୍ମା ସମ୍ମାନଜନକ ସଭାପତି ଆସନ ଅଳଂକୃତ କରିଥିଲେ ।

ପାରଳାଖେମୁଣ୍ଡି ଅଧିବେଶନର ଦୁଇବର୍ଷ ପରେ ଖ୍ରୀ : ୧୯୧୭ ବାଲେଶ୍ୱର ଉତ୍କଳ ସମ୍ମିଳନୀ ଦ୍ୱାଦଶ ଅଧିବେଶନରେ ଯୋଗଦେଇ ବିକ୍ରମଦେବ ବର୍ମା ପ୍ରସ୍ତାବ ଆଗତ କରିଥିଲେ—"ବିଶାଖାପାଟଣା ଜିଲ୍ଲା ସ୍ଥିତ କରଣମାନେ ଓଡ଼ିଆ ହୋଇଥିଲେ ସୁଦ୍ଧା ଶିକ୍ଷାବିଭାଗୀୟ କର୍ତ୍ତୃପକ୍ଷ ସେମାନଙ୍କୁ ଓଡ଼ିଆ ବୋଲି ଗ୍ରହଣ କରୁନଥିବା ଅତି ଶୋଚନୀୟ ବିଷୟ । ସେମାନଙ୍କର ମାତୃ-ଭାଷା ଓଡ଼ିଆ ଏବଂ ଜନଗଣନାରେ ତାଙ୍କୁ ଓଡ଼ିଆ ବୋଲି ଦର୍ଶାଯାଇଛି । କିନ୍ତୁ ସରକାର ବାହାଦୁର ସେମାନେ ଓଡ଼ିଆ ନୁହଁନ୍ତି ବୋଲି କହି ଅନେକ କାର୍ଯ୍ୟରେ ଉପେକ୍ଷା କରୁଛନ୍ତି । ଏହାଦ୍ୱାରା ଓଡ଼ିଆ ଜାତିର ଏକ ବିଶେଷ କ୍ଷତି କରାଯାଉଛି । ସମ୍ମିଳନୀ ପକ୍ଷରୁ ସରକାରଙ୍କୁ ଅନୁରୋଧ କରାଯାଉ ଯେ -- ସରକାର ସେମାନଙ୍କୁ ଓଡ଼ିଆ ଭାବେ ଗ୍ରହଣ କରନ୍ତୁ ।"

## ଆନ୍ଧ୍ର ସମାଜରେ ପ୍ରଭାବ

ବିଶାଖାପାଟଣାରେ ବିକ୍ରମଦେବ ବର୍ମା କେବଳ ଓଡ଼ିଆମାନଙ୍କର ଅଭିଭାବକ ନଥିଲେ; ସେ ଥିଲେ ଆନ୍ଧ୍ରମାନଙ୍କର ପଥପ୍ରଦର୍ଶକ-ଉଭୟ ଓଡ଼ିଆ ଓ ତେଲୁଗୁ ସାହିତ୍ୟର ସୁବିଖ୍ୟାତ କବି, ଲେଖକ । ତାଙ୍କର ସୁନାମ ସମଗ୍ର ପ୍ରାକ୍ତନ ଓଡ଼ିଶାକୁ ଯେଭଳି ପ୍ରସାରିତ ହୋଇଥିଲା, ଆନ୍ଧ୍ର ଭାଷାଭାଷୀ ଅଧ୍ୟୁଷିତ ମାନ୍ଦ୍ରାଜ ପ୍ରଦେଶରେ ମଧ୍ୟ ତତୋଧିକ ପ୍ରସାର ଲାଭ କରିଥିଲା ।

ସେ ଓଡ଼ିଆରେ ଯେଉଁଳି ସାରଗର୍ଭକ ଭାଷଣ ଦେଉଥିଲେ, ତେଲୁଗୁ ଭାଷାରେ ମଧ୍ୟ ସେହିଭଳି ଆକର୍ଷଣୀୟ ଭାଷଣ ଦେଇ ହଜାର ହଜାର ଶ୍ରୋତାଙ୍କୁ ମନ୍ତ୍ର-ମୁଗ୍ଧ କରିରଖି ପାରୁଥିଲେ । ସଂସ୍କୃତ ଶ୍ଳୋକ ରଚନା ଓ ସ୍ପଷ୍ଟ ଉଚ୍ଚାରଣ ପାଇଁ ତାଙ୍କର ଯଥେଷ୍ଟ ସୁନାମ ରହିଥିଲା । କେବଳ ସାହିତ୍ୟିକ ପଣ୍ଡିତ-ମାନଙ୍କ ମଧ୍ୟରେ ନୁହେଁ; ତେଲୁଗୁ ଭାଷାଭାଷୀ ସାଧାରଣ ଆନ୍ଧ୍ର ସମାଜରେ ବିକ୍ରମଦେବ ବର୍ମାଙ୍କର ଅସୀମ ପ୍ରଭାବ ରହିଥିଲା ।

ବିଶାଖାପାଟଣା ଅଞ୍ଚଳରେ ଘୋର ଦୁର୍ଭିକ୍ଷ ପଡ଼ିଥିଲାବେଳେ ବିକ୍ରମଦେବ ବର୍ମା ତାହାର ବିବରଣୀ ସମ୍ବଳିତ ଏକ ଦୀର୍ଘ ଟେଲିଗ୍ରାମ ମାନ୍ଦ୍ରାଜ ଗଭର୍ଣ୍ଣରଙ୍କ ପାଖକୁ ପଠାଇଥିଲେ । ବିଶାଖାପାଟଣା ଜିଲ୍ଲା କଲେକ୍ଟର ସେତେବେଳେ ଏ ଜିଲ୍ଲା ଅନ୍ତର୍ଗତ ଏଜେନ୍ସୀ ଅଞ୍ଚଳ ମାଲକାନଗିରିଠାରେ ଅବସ୍ଥାନ କରୁଥିଲେ । ଏଣୁ ମାନ୍ଦ୍ରାଜ ଗଭର୍ଣ୍ଣର କଲେକ୍ଟରଙ୍କୁ ଆଦେଶ ଦେଲେ ଶୀଘ୍ର ବିଶାଖାପାଟଣା ଯିବା ପାଇଁ । କଲେକ୍ଟର ସାହେବ ବିଶାଖାପାଟଣାରେ ପହଞ୍ଚିଲେ ଏବଂ ତାହାଙ୍କୁ ସ୍ୱାଗତ ଜଣାଇବା ପାଇଁ ବିକ୍ରମଦେବ ବର୍ମା ଷ୍ଟେସନରେ ଉପସ୍ଥିତ ହୋଇ-ଥିଲେ । କଲେକ୍ଟର ଷ୍ଟେସନ ପ୍ଲାଟଫର୍ମ ଉପରେ ହିଁ ବିକ୍ରମଦେବ ବର୍ମାଙ୍କୁ ପ୍ରଶ୍ନ କରିଥିଲେ "ଦୁର୍ଭିକ୍ଷ କାହିଁ, ଆପଣ ତ ଏଠାରେ ଅଛନ୍ତି । ଅନ୍ୟାନ୍ୟ ଲୋକ ଏଠାରେ ସୁଖରେ ଆନନ୍ଦରେ ଥିଲାପରି ବୋଧ ହେଉଅଛି । ଆଉ ଦୁର୍ଭିକ୍ଷଟା ପୁଣି କେଉଁଠି ରହିଛି ?" ବର୍ମା ମହୋଦୟ ଏଉକ୍ତି ଶୁଣି ବିନମ୍ର ତଥା ଦୃଢସ୍ୱରରେ ଉତ୍ତର ଦେଲେ "ଆପଣ ଏ ଷ୍ଟେସନରେ ଦୁର୍ଭିକ୍ଷର ସାକ୍ଷାତ ପାଇ ପାରିବେ ନାହିଁ । କାଲି ଆପଣଙ୍କର ବଙ୍ଗଳାଠାରେ ଦୁର୍ଭିକ୍ଷର ସ୍ୱରୂପ ସ୍ପଷ୍ଟ ଦେଖିପାରିବେ ।" ଏହା ପରେ ବିକ୍ରମଦେବ ବର୍ମା ବିଦାୟ ନେଇଥିଲେ ଏବଂ ତା ପରଦିନ କଲେକ୍ଟରଙ୍କ ବଙ୍ଗଳା ପାଖରେ ପ୍ରାୟ କୋଡ଼ିଏ ହଜାର ଦୁର୍ଭିକ୍ଷ ପ୍ରପୀଡ଼ିତ ଜନତାଙ୍କୁ ଉପସ୍ଥିତ କରାଇଥିଲେ । କଲେକ୍ଟର ଏହା ଦେଖି ସ୍ତମ୍ଭୀଭୂତ ହୋଇପଡ଼ିଲେ । ସଙ୍ଗେସଙ୍ଗେ ସରକାରଙ୍କ ପକ୍ଷରୁ ଦୁଇଶହ ବସ୍ତା ଚାଉଳ ମଞ୍ଜୁର କରି ଅନ୍ନଛତ୍ର ଖୋଲିଥିଲେ ।

ସାଧାରଣ ଲୋକେ ଥିଲେ କୃଷକ । ସେମାନଙ୍କର କୃଷି ଉତ୍ପାଦନରେ ବ୍ୟାହତ, ଅଭାବ ଅସୁବିଧା ଓ ସେସବୁର ସମାଧାନ ପାଇଁ ବିକ୍ରମଦେବ ବର୍ମା

ସଚେତନ ଥିବା ଅନୁଭବ କରି ବ୍ରିଟିଶ ସରକାର ତାଙ୍କୁ ଭାରତୀୟ କୃଷି କମିଶନ ସଭ୍ୟ ମନୋନୀତ କରିଥିଲେ । ବର୍ମା ମହୋଦୟ ଏଦେଶର ବିଭିନ୍ନ ଅଞ୍ଚଳ ବୁଲି କୃଷିଜନିତ ଅଭାବ ଅସୁବିଧା ଓ ତାହାର ପ୍ରତିକାର ପାଇଁ ସୁଚିନ୍ତିତ ପରାମର୍ଶମାନ ଦେଉଥିଲେ ।

ଏ ସମୟରେ ଜଣେ ଆନ୍ଧ୍ର ପଣ୍ଡିତ ସଂସ୍କୃତ ଭାଷାର ପ୍ରାଚୀନ 'ବାତ୍ସାୟନ କାମସୂତ୍ର' ପୁସ୍ତକକୁ ତେଲୁଗୁ ଭାଷାରେ ଅନୂଦିତ ଓ ମୁଦ୍ରିତ କରି ପ୍ରତି ବହିକୁ ଦଶଟଙ୍କା ମୂଲ୍ୟରେ ବିକ୍ରି କରୁଥିଲେ । ଏ ବହି ବହୁସଂଖ୍ୟାରେ ବିକ୍ରି ହେଉଥିଲା । ଅନ୍ୟ ଜଣେ ଈର୍ଷାପରାୟଣ ଆନ୍ଧ୍ର ପଣ୍ଡିତ ଏ ବହି ଅଶ୍ଳୀଳ ବୋଲି ମାନ୍ଦ୍ରାଜ ସରକାରଙ୍କ ଦୃଷ୍ଟି ଆକର୍ଷଣ କରାଇଥିଲେ । ଫଳରେ ଉକ୍ତ ବହିକୁ ସରକାର ବାଜ୍ୟାପ୍ତ କରି ଦେଇଥିଲେ ଏବଂ ଅନୁବାଦକଙ୍କ ଘର ଓ ବଜାରରେ ବିକ୍ରି କରୁଥିବା ବହି ଦୋକାନ ସବୁ ଖାନତଲ୍ଲାସ କରି ଏହାକୁ ଜବତ କଲେ । ଅନୁବାଦକ ପଣ୍ଡିତଙ୍କ ବିରୁଦ୍ଧରେ ସରକାର ମକଦ୍ଦମା ମଧ୍ୟ ଆରମ୍ଭ କରିଦେଲେ । ପଣ୍ଡିତ ଦଣ୍ଡିତ ହୋଇଯିବା ଏକ ପ୍ରକାର ନିଶ୍ଚିତ ଜଣାଗଲା । ଏହି ବାଜ୍ୟାପ୍ତି, ଜବତ ଓ ମକଦ୍ଦମା ବିଷୟ ବିଭିନ୍ନ ଖବର କାଗଜରେ ପ୍ରକାଶିତ ହେଲା ।

ବାତ୍ସାୟନ କାମସୂତ୍ର ଓ ଏହାର ତେଲୁଗୁ ଅନୂଦିତ ପୁସ୍ତକ ଅଶ୍ଳୀଳ ନୁହେଁ ଏବଂ ସରକାର ଏ ସଂପର୍କରେ ଭୁଲ ପଦକ୍ଷେପ ନେଇଛନ୍ତି ବୋଲି ବିଭିନ୍ନ ଯୁକ୍ତି ଦର୍ଶାଇ ବିଶ୍ୱମଦେବ ବର୍ମା ଏକ ଦୀର୍ଘ ନିବନ୍ଧ ଲେଖି ପତ୍ର ପତ୍ରିକାରେ ପ୍ରକାଶ କଲେ । ଏହାକୁ ନେଇ ସମଗ୍ର ମାନ୍ଦ୍ରାଜ ପ୍ରଦେଶରେ ଆନ୍ଦୋଳନ ସୃଷ୍ଟି ହେଲା । ସରକାର ଅବଶେଷରେ ବିଶ୍ୱମଦେବ ବର୍ମାଙ୍କ ଯୁକ୍ତିକୁ ମାନିନେଲେ ଏବଂ ଜବତ ପୁସ୍ତକ ଅନୁବାଦକ ପଣ୍ଡିତଙ୍କୁ ଫେରାଇ ନେଇ ତାଙ୍କ ବିରୁଦ୍ଧରେ ହୋଇଥିବା ମକଦ୍ଦମା ପ୍ରତ୍ୟାହାର କରିନେଇଥିଲେ । ପଣ୍ଡିତ ଜଣକ ହାଇଦରାବାଦରୁ ବିଶାଖାପାଟଣା ଆସି ବ୍ୟକ୍ତିଗତ ଭାବେ ବର୍ମା ମହୋଦୟଙ୍କ ନିକଟରେ ନିଜର କୃତଜ୍ଞତା ଜଣାଇଥିଲେ । ବିଶ୍ୱମଦେବ ବର୍ମାଙ୍କର ଦୈନନ୍ଦିନ ଜୀବନରେ ଏଭଳି ଅନେକ ଘଟଣା ଘଟି ଯାଉଥିଲା । ନିଜର କର୍ତ୍ତବ୍ୟ ମନେକରି ସେ ଏସବୁ ସମାପନ କରିଯାଉଥିଲେ ।

ଆନ୍ଧ୍ର ସମାଜରେ ଶଶିଭୂଷଣଦେବ ବର୍ମାଙ୍କର ପ୍ରତିଷ୍ଠା ଓ ପ୍ରତିପତ୍ତି ଅବିସମ୍ବାଦିତ ଥିଲା । ସେ ଖ୍ରୀ: ୧୯୧୭ରେ ବଶାଖାପାଟଣାଠାରେ ଅନୁଷ୍ଠିତ 'ଆନ୍ଧ୍ରଜିଲ୍ଲା ସମ୍ମିଳନୀ'ରେ ସଭାପତିତ୍ୱ କରିଥିଲେ । ଏ ସମ୍ମିଳନୀର ସର୍ବ ପ୍ରଥମ ବୈଠକ ଖ୍ରୀ: ୧୯୦୩ରେ ବିଶାଖାପାଟଣାଠାରେ ହିଁ ଆରମ୍ଭ ହୋଇଥିଲା । ସେତେବେଳେ ବି ବର୍ମା ମହୋଦୟ ସେଥିରେ ସଭାପତିତ୍ୱ କରିଥିଲେ । ତାଙ୍କର ସଭାପତି ଅଭିଭାଷଣଗୁଡ଼ିକ ଯେ ଶୁଣୁଥିଲେ, ତାହାଙ୍କୁ ଅଣଆନ୍ଧ୍ର-ଓଡ଼ିଆ ବୋଲି କେହି ଭାବି ପାରୁନଥିଲେ । ସାରଗର୍ଭକ ସେସବୁ ଭାଷଣରେ ଜାତୀୟତା ଓ ଦେଶାତ୍ମବୋଧ ଭରି ରହୁଥିଲା । ଖ୍ରୀ ୧୯୧୭ ସମ୍ମିଳନୀର ସଭାପତି ଅଭିଭାଷଣରେ ସେ କହିଥିଲେ, "ବ୍ରିଟିଶ ସାମ୍ରାଜ୍ୟର ଅଧିବାସୀ ସ୍ୱରୂପ ଏକ ମହାପ୍ରାନ ଐତିହାସିକ ସଭ୍ୟତାର ଉତ୍ତରାଧିକାରୀ ରୂପେ ଏବଂ ବ୍ରିଟିଶ ପ୍ରଜାପୁଞ୍ଜଙ୍କ ସହିତ ବ୍ରିଟିଶ ସାମ୍ରାଜ୍ୟର ଖ୍ୟାତି ଓ ଦାୟିତ୍ୱର ସମାନ ଓ ସମ୍ପୂର୍ଣ୍ଣ ଅଂଶୀଦାର ସ୍ୱରୂପ ଆମ୍ଭମାନଙ୍କ ଦାବୀ ଏହି ଯେ, ଆମ୍ଭ-ମାନଙ୍କର ମାତୃଭୂମି ତା'ର ବର୍ତ୍ତମାନ ପରାଧୀନ ଅବସ୍ଥାରୁ ଉନ୍ନୀତ ହୋଇ ସାମ୍ରାଜ୍ୟର ସ୍ୱାୟତ୍ତଶାସନ ଭୋଗୀ ଅନ୍ୟାନ୍ୟ ଅଂଶପରି ସମାନ ଅଧିକାର ପାଇବା ଉଚିତ । ଏପରି ସମାନ ଅଧିକାର ପାଇଁ ସେ ସର୍ବଥା ଉପଯୁକ୍ତ । ଯଦି ଭାରତବର୍ଷକୁ ଆତ୍ମଦାୟିତ୍ୱପୂର୍ଣ୍ଣ ସ୍ୱାୟତ୍ତଶାସନ ପ୍ରଦାନ କରାଯାଏ, ତେବେ ବ୍ରିଟିଶ ସାମ୍ରାଜ୍ୟ ମଧ୍ୟରେ ଅନ୍ୟାନ୍ୟ ସ୍ୱାୟତ୍ତଶାସନ ଭୋଗୀ ଅଞ୍ଚଳ ସହିତ ଭାରତବର୍ଷ ସମକକ୍ଷ ହୋଇ ପାରିବ ଓ ଏହି ସମାନ ଅଧିକାର ତା ପକ୍ଷରେ ସମ୍ମାନଜନକ ହେବ, ନଚେତ ତାହା ଅସମ୍ଭବ ।"

ସମଗ୍ର ଭାରତରେ ସେତେବେଳକୁ ଡକ୍ଟର ଆନିବେସାନ୍ତଙ୍କ 'ହୋମରୁଲ ମୁଭମେଣ୍ଟ' ଅତ୍ୟନ୍ତ ସଫଳତାର ସହ ଚାଲିଥିଲା । ଏଦେଶର ବହୁ ବିଶିଷ୍ଟ ବୁଦ୍ଧିଜୀବୀ ସେହି ମୁଭମେଣ୍ଟ ସହିତ ନିଜକୁ ମିଶାଇ ଦେଇଥିଲେ । ଶଶିଭୂଷଣଦେବ ବର୍ମା ନିଜର ଅଞ୍ଚଳକୁ ଜାତୀୟ ସ୍ରୋତରେ ସଂଯୋଗ କରିବା ପାଇଁ ନିଜ ଭାଷଣରେ ଉପରୋକ୍ତ ପ୍ରସଙ୍ଗ ଭଳି ଅନେକ କଥା କହୁଥିଲେ ଏବଂ ଏସବୁ ଉକ୍ତି ଏକାନ୍ତରେ ସମୟୋପଯୋଗୀ ଥିଲା ।

ବର୍ମା ମହୋଦୟ ଥିଲେ ପରୋପକାରୀ, ଦାନୀ ତଥା ଅତିଥି ଓ ଧର୍ମ-ପରାୟଣ । ପ୍ରତି ସକାଳେ ନିତ୍ୟକର୍ମ ଶେଷପରେ ପୂଜା ଅର୍ଚ୍ଚନାରେ ଅନେକ

ସମସ୍ତ ଯାଉଥିଲା । ତା ପରେ ନିଜର ସୀମିତ ସମ୍ବଳରୁ କିଛି ପଇସା ଧରି ପିଣ୍ଡାରେ ବସୁଥିଲେ । ଦୁଃଖୀ ରଙ୍କୀଙ୍କୁ ତାହା ଦାନ କରିବା ପରେ ସେ ଅନ୍ୟାନ୍ୟ ଦୈନନ୍ଦିନ କାର୍ଯ୍ୟ କରୁଥିଲେ । ଅନେକ ଗରିବ ଛାତ୍ରଙ୍କୁ ମାସିକ ବୃତ୍ତି ଦେଉଥିଲେ । ସବୁବେଳେ ପ୍ରାୟ କେହି ନା କେହି ଅତିଥି ତାଙ୍କ ଘରେ ପହଞ୍ଚୁଥିଲେ । ସେମାନଙ୍କ ଖାଦ୍ୟପେୟ, ତର୍ଚ୍ଚା ପରେ ବୀରମଦେବ ବର୍ମା ନିଜେ ଅନୁସ୍ପର୍ଶ କରୁଥିଲେ । ବେଳେବେଳେ ଏଭଳି ପରିସ୍ଥିତି ସୃଷ୍ଟି ହେଉଥିଲା ଯେ କେହି ଅତିଥି ବାହାରକୁ କୌଣସି କାମରେ ଚାଲି ଯାଇ ଅପରାହ୍ନ ତିନି ଘଣ୍ଟା ପର୍ଯ୍ୟନ୍ତ ନ ଫେରିଲେ ମଧ୍ୟ ସେ ନିଜେ ନଖାଇ ଅତିଥିଙ୍କୁ ଅପେକ୍ଷା କରୁଥିଲୁ ।

ଓଡ଼ିଆ ସାହିତ୍ୟର ଜଣେ ପ୍ରତିଷ୍ଠିତା ନାୟିକାଵ ଅନ୍ନପୂର୍ଣ୍ଣା ପଟ୍ଟନାୟକ ନିଜର ସ୍ୱାମୀ ଓ ଦୁଇଟି ସନ୍ତାନଙ୍କୁ ସାଙ୍ଗରେ ଧରି ଅସହାୟ ଅବସ୍ଥାରେ ଖ୍ରୀ: ୧୯୧୯ ଶେଷବେଳକୁ ବଣାଖାପାଟଣାରେ ପହଞ୍ଚିଲେ । ନିଜର ସ୍ୱାଧୀନ ଚେତନା ଓ ସ୍ୱାଭିମାନ ଯୋଗୁଁ ନାୟିକାଵ ଅନେକ ହଇରାଣ ହରକତ ହୋଇ ସମ୍ବଳଶୂନ୍ୟ ଅବସ୍ଥାରେ ବୀରମଦେବ ବର୍ମାଙ୍କୁ ସାକ୍ଷାତ କରିଥିଲେ ।

ନାୟିକାଵ ଅନ୍ନପୂର୍ଣ୍ଣାଙ୍କ ସ୍ୱାମୀ ଶ୍ରୀରାମ ପଟ୍ଟନାୟକ ବଡ଼ଖେମୁଣ୍ଡି ରାଜାଙ୍କ କର୍ମଚାରୀ ଥିଲେ । ଅନ୍ନପୂର୍ଣ୍ଣା ପଟ୍ଟନାୟକଙ୍କ ପୈତୃକଘର ଟିକଲି ରାଜ୍ୟରେ । ବଡ଼ଖେମୁଣ୍ଡି ଓ ଟିକଲି ରାଜାଙ୍କ ମଧ୍ୟରେ ମନାନ୍ତର ଭାବଯୋଗୁଁ ଶ୍ରୀରାମ ଓ ଅନ୍ନପୂର୍ଣ୍ଣାଙ୍କ ବିବାହ ପ୍ରସ୍ତାବକୁ ଉଭୟ ରାଜାଙ୍କ ପକ୍ଷରୁ ବାରଣ କରା ଯାଇଥିଲା । ଏମାନେ କିନ୍ତୁ ଏଭଳି ଅନୈତିକ ବାରଣକୁ ଅମାନ୍ୟ କରି ବାହାହେଲେ । ଏଣୁ ଶ୍ରୀରାମ ପଟ୍ଟନାୟକ ବଡ଼ଖେମୁଣ୍ଡି ରାଜ୍ୟର ଚାକିରି ହରାଇ ସପରିବାର ବ୍ରହ୍ମପୁର ଆସି ଯାଇଥିଲେ । ବ୍ରହ୍ମପୁରରେ ସେତେବେଳର ବିଶିଷ୍ଟ ଓକିଲ (ସାର୍) ପର୍ଶୁରାମ ପାତ୍ର ଏମାନଙ୍କୁ ଆଶ୍ରୟ ଦେଇଥିଲେ ଏବଂ ଶ୍ରୀରାମ ପଟ୍ଟନାୟକଙ୍କୁ ସରକାରଙ୍କ ରାଜସ୍ୱ ବିଭାଗ ଚାକିରିରେ ନିଯୁକ୍ତ କରିଥିଲେ । ଏମାନେ କିନ୍ତୁ କିଛି ଅଧିକ ସୁବିଧାର ପ୍ରତିଶ୍ରୁତି ପାଇ ବ୍ରହ୍ମପୁର ଛାଡ଼ି ପାରଳାଖେମୁଣ୍ଡି ଯାଇଥିଲେ । ସେଠାରେ ପ୍ରଥମେ ଶ୍ରୀରାମ ପଟ୍ଟନାୟକ ମହାରାଜାଙ୍କ ଗଜପତି ପ୍ରେସରେ ନିଯୁକ୍ତି ପାଇଥିଲେ ଓ ନାୟିକାଵ ଅନ୍ନପୂର୍ଣ୍ଣା

ମହୋଦୟାଙ୍କ ସାହିତ୍ୟ ଶିକ୍ଷୟିତ୍ରୀ ନିଯୁକ୍ତା ହୋଇଥିଲେ । ସ୍ୱାମୀ ସ୍ତ୍ରୀ ଦୁଇଟି ଦରମା ପାଇବା ଯୋଗୁଁ ପରିବାର ଭଲରେ ଚାଲୁଥିଲା । ଏଣୁ ଅନ୍ୟ କର୍ମଚାରୀ ଏପରିକି ରାଜଅନ୍ତଃପୁରର ରାଜାଙ୍କର ରାଣୀ ମଧ୍ୟ ଈର୍ଷାପରାୟଣ ହୋଇପଡ଼ି ଏମାନଙ୍କ ବିରୁଦ୍ଧରେ ବିଭିନ୍ନ ଚକ୍ରାନ୍ତ କରିଥିଲେ । କୁଚକ୍ରୀମାନେ ସଫଳ ହେଲେ । ଏଣୁ ନାୟିକାବ ଅନ୍ନପୂର୍ଣ୍ଣା ସପରିବାର ପାରଳାଖେମୁଣ୍ଡିରୁ ବିଶାଖାପାଟଣା ଯାଇ ବିକ୍ରମଦେବ ବର୍ମାଙ୍କ ପାଖରେ ଆଶ୍ରୟ ନେଇଥିଲେ ।

ବର୍ମା ମହୋଦୟ ଶ୍ରୀରାମ ପଟ୍ଟନାୟକଙ୍କୁ ବିଶାଖାପାଟଣା ତହସିଲ ଅଫିସରେ ନିଯୁକ୍ତି ବ୍ୟବସ୍ଥା କରି ଦେଇଥିଲେ । ନାୟିକାବ ଅନ୍ନପୂର୍ଣ୍ଣାଙ୍କୁ ମଧ୍ୟ ଓଡ଼ିଆସମାଜର ବିଭିନ୍ନ କାର୍ଯ୍ୟ କରିବାକୁ ପରାମର୍ଶ ଦେଇଥିଲେ । ଏଠାରେ ନାୟିକାବଙ୍କ ପରିବାର ପ୍ରାୟ ୧୬ ବର୍ଷ ଅବସ୍ଥାନ କରିଥିଲେ । କବୟିତ୍ରୀଙ୍କ ଝିଅ ମନୋରମା ପଟ୍ଟନାୟକ ଏଠାରେ ସ୍ନାତକୋତ୍ତର ଶିକ୍ଷା ସମାପ୍ତ କଲେ ଓ ସେ ହେଲେ ଓଡ଼ିଶାର ପ୍ରଥମ ମହିଳା ଏମ୍. ଏ. । ମନୋରମା ରାଜସ୍ଥରେ ନିଯୁକ୍ତ ପାଇ ମୁରାଦାବାଦ ମହିଳା କଲେଜକୁ ଅଧ୍ୟାପିକା ହୋଇଗଲେ ଏବଂ ପୁତ୍ର ମନମୋହନ ପଟ୍ଟନାୟକ ସ୍ନାତକୋତ୍ତର ଶିକ୍ଷା ସମାପ୍ତ ପରେ ବାଲେଶ୍ୱର ଜିଲ୍ଲା ସ୍କୁଲକୁ ଶିକ୍ଷକ ଭାବେ ନିଯୁକ୍ତି ପାଇ ରାଜସ୍ଥରେ ଯୋଗଦେଲେ । ବିକ୍ରମଦେବ ବର୍ମାଙ୍କ ସଦିଚ୍ଛା ଯୋଗୁ ନାୟିକାବ ଅନ୍ନପୂର୍ଣ୍ଣା ମଧ୍ୟ ଓଡ଼ିଆ ସାହିତ୍ୟରେ ସୁପ୍ରତିଷ୍ଠିତା ହେଲେ । ସେ ଓଡ଼ିଶାର ସବୁ ପତ୍ରପତ୍ରିକା ପାଇଁ କବିତା ଲେଖୁଥିଲେ ଏବଂ କିଛିବର୍ଷ ପାଇଁ ବିଶାଖାପାଟଣାରୁ ହିଁ କଟକର ମାସିକ ସାହିତ୍ୟ ପତ୍ରିକା 'ସହକାର' ସଂପାଦନା କରୁଥିଲେ । ନାୟିକାବଙ୍କ ପରିବାର ବିକ୍ରମଦେବ ବର୍ମାଙ୍କ ପ୍ରତି ଚିରକୃତଜ୍ଞ ରହିଲେ ।

ଉପରୋକ୍ତ ଘଟଣାବଳୀ ବିଭିନ୍ନ ବିବରଣୀରୁ ନମୁନା ମାତ୍ର । ଏଭଳି ଅନେକ ଘଟଣା ସେଠାରେ ଘଟି ଯାଉଥିଲା । ବିକ୍ରମଦେବ ବର୍ମାଙ୍କ ଏସବୁ ମହନୀୟ କାର୍ଯ୍ୟ ଯୋଗୁଁ ସେ ହୋଇ ପଡ଼ିଥିଲେ ମୁକୁଟବିହୀନ ସମ୍ରାଟ । ସେ ରାଜା ନଥିଲେ; କିନ୍ତୁ ସେତେବେଳର ସାଧାରଣ ରାଜା ମହାରାଜାଙ୍କଠାରୁ ବର୍ମା ମହୋଦୟଙ୍କ ସାମାଜିକ ସମ୍ମାନ ବହୁ ଉଚ୍ଚରେ ରହିଥିଲା ।

## ଜୟପୁର ମକଦ୍ଦମାର ପରିସମାପ୍ତି

ଜୟପୁର ରାଜ ବିକ୍ରମଦେବ (ତୃତୀୟ)ଙ୍କର ମାତ୍ର ୪୫ ବର୍ଷ ବୟସରେ ଖ୍ରୀ : ୧୯୨୦ ଜାନୁଆରୀ ମାସରେ ଅଯୋଧ୍ୟାଠାରେ ଦେହାନ୍ତ ହୋଇଯାଇ-

ଥିଲା । ସେ ତୀର୍ଥ ଭ୍ରମଣରେ ଯାଇଥିଲେ; ଆଉ ଫେରିଲେ ନାହିଁ । ତାଙ୍କର ୨୪ ବର୍ଷ ଶାସନ କାଳରେ ସେ ଅନେକ ଅସ୍ତ୍ରଶସ୍ତ୍ର ସଂଗ୍ରହ କରି ଏକ ବିଶାଳ ଅସ୍ତ୍ରାଗାର ପ୍ରସ୍ତୁତ କରିଥିଲେ । ଏହାର ପ୍ରଭାବରେ ସେ ବିଷମକଟକ, ମାଡ଼ଗୁଲ ପ୍ରଭୃତି ଛୋଟ ଛୋଟ ରାଜ୍ୟଗୁଡ଼ିକ ଜୟ କରି ନିଜ ରାଜ୍ୟରେ ମିଶାଇ ଦେଇଥିଲେ । କେତେକ ବ୍ରିଟିଶ ଅଧିକାରୀଙ୍କ ଅବସ୍ଥାନ ଯୋଗୁଁ ଏହି ସମୟ ମଧ୍ୟରେ ବଣପାହାଡ଼ ଘେରା ଜୟପୁର ରାଜ୍ୟ ଆଧୁନିକତାର ଆଲୋକରେ ଆଲୋକିତ ହୋଇଥିଲା । ଏହି ରାଜା ବିକ୍ରମଦେବ (ତୃତୀୟ)ଙ୍କ ପରଲୋକ ପରେ, ତାହାଙ୍କ ପୁତ୍ର ରାମଚନ୍ଦ୍ର ଦେବ (୪ର୍ଥ) ଭାବେ ଜୟପୁରର ରାଜା ହେଲେ । ରାଜସିଂହାସନ ଅଳଂକୃତ କରିବା ପରେ ସର୍ବପ୍ରଥମେ ସେ ବିଶାଖାପାଟଣାଠାରେ ରହୁଥିବା ନିଜର ଜ୍ୟେଷ୍ଠତାତ ବିକ୍ରମଦେବ ବର୍ମାଙ୍କ ସହିତ ଯୋଗାଯୋଗ ସ୍ଥାପନ କଲେ । ବର୍ମା ମହୋଦୟଙ୍କ ସୁନାମ ଓ ଖ୍ୟାତି ସଂପର୍କରେ ରାମଚନ୍ଦ୍ର ଦେବ ପୂର୍ବରୁ ସଂପୂର୍ଣ୍ଣ ଅବଗତ ଥିଲେ । ଜ୍ଞାନୀ, ଗୁଣୀ, ଦେଶହିତୈଷୀ, ସମ୍ମାନାସ୍ପଦ ପିତୃବ୍ୟଙ୍କ ପାଇଁ ସେ ଗର୍ବ କରୁଥିଲେ । ନିଜ-ବଂଶର ମର୍ଯ୍ୟାଦା ଯେ ବିକ୍ରମଦେବ ବର୍ମାଙ୍କ ଯୋଗୁଁ ବହୁ ପରିମାଣରେ ବୃଦ୍ଧି ପାଇଛି—ଏହା ରାମଚନ୍ଦ୍ର ଦେବ (୪ର୍ଥ) ମର୍ମେ ମର୍ମେ ଅନୁଭବ କରୁଥିଲେ । ତେଣୁ ବିଶାଖାପାଟଣାଠାରୁ ଜୟପୁର ଆସିବା ପାଇଁ ପିତୃବ୍ୟଙ୍କୁ ବିନମ୍ର ନିବେଦନ କରିଥିଲେ ।

ବିକ୍ରମଦେବ ବର୍ମା ଜୟପୁରରେ ପହଞ୍ଚିଲେ । ରାମଚନ୍ଦ୍ର ଦେବ (୪ର୍ଥ) ତାଙ୍କୁ ସାଦରେ ପାଛୋଟି ନେଇ ରାଜନଅରରେ ରଖିଲେ । ଯୁବକ ରାଜାଙ୍କ ଭକ୍ତି ଓ ସମ୍ମାନ ପ୍ରଦର୍ଶନରେ ବର୍ମା ମହୋଦୟ ତୃପ୍ତ ହୋଇଥିଲେ ଏବଂ ମାସିକ ଭତ୍ତା ପାଇଁ ସେ କରିଥିବା ଦାବୀ ମକଦ୍ଦମା ଯାହା ପ୍ରିଭି କାଉନସିଲରେ ବିଚାରାଧୀନ ଥିଲା—ତାହା ପ୍ରତ୍ୟାହାର କରି ନେଇଥିଲେ । ଏ ମକଦ୍ଦମାର ଆରମ୍ଭ କାଳ ଖ୍ରୀ : ୧୯୦୯ ଠାରୁ ୧୯୨୦ ଯାଏଁ ବିକ୍ରମଦେବ ବର୍ମା ଜୟପୁର ରାଜ୍ୟରୁ ମାସିକ ଭତ୍ତା ପାଇ ନଥିଲେ । କେବଳ ନବରଙ୍ଗପୁର ରାଣୀଙ୍କ ସାମୟିକ ଆର୍ଥିକ ସାହାଯ୍ୟ ଓ ନିଜର ପ୍ରକାଶିତ ପୁସ୍ତକଗୁଡ଼ିକର ରୟାଲଟି ବାବଦକୁ ପାଉଥିବା ସ୍ୱଳ୍ପ ଅର୍ଥରେ ନିଜ ପରିବାର ପ୍ରତିପୋଷଣ କରିଥିଲେ । ମକଦ୍ଦମାର ନିଷ୍ପତ୍ତି ପରେ ଏ ବାବଦ ୧୧ ବର୍ଷର ବକେୟା ସମେତ ମାସିକ

ଦୁଇହଜାର ଟଙ୍କା ଭତ୍ତା ଓ କିଛି ଭୂସଂପତ୍ତି ସ୍ଥାୟୀଭାବେ ସେ ପାଇବାର ଆଶା ଉଜ୍ଜ୍ୱଳ ଥିଲା । ତଥାପି ସେସବୁ ପ୍ରତି ଆସକ୍ତ ନହୋଇ ବିକ୍ରମଦେବ ବର୍ମା ନିଜ ପ୍ରଭୁର ରାମଚନ୍ଦ୍ର ଦେବ (୪ର୍ଥ)ଙ୍କ ପ୍ରତି ସ୍ନେହ ମମତାବଶତଃ ମୁକଦ୍ଦମାର ପରିସମାପ୍ତି ଘଟାଇଥିଲେ । ରାଜା ରାମଚନ୍ଦ୍ର ଦେବ ସ୍ୱେଚ୍ଛାକୃତ ଭାବେ ପିତୃବ୍ୟ ବିକ୍ରମଦେବ ବର୍ମାଙ୍କୁ ଖ୍ରୀ: ୧୯୨୦ ଠାରୁ ରାଜକୋଷରୁ ମାସିକ ଏକ ହଜାର ଟଙ୍କା ଭତ୍ତା ଦେଉଥିଲେ । ରାଜ କାର୍ଯ୍ୟରେ ତାଙ୍କ ଠାରୁ ପରାମର୍ଶ ନେଉଥିଲେ ଓ ସ୍ଥାୟୀ ଭାବେ ଜୟପୁର ରାଜନଅରରେ ରହିବାପାଇଁ ପିତୃବ୍ୟଙ୍କୁ ଅନୁରୋଧ କରି-ଥିଲେ । ରାମଚନ୍ଦ୍ରଦେବ ଏକଥା ଭଲ ଭାବେ ଜାଣିଥିଲେ ଯେ ବିକ୍ରମ ଦେବ ବର୍ମା ସେଠାରେ ରହିଲେ ଜୟପୁରର ସମ୍ମାନ ବଢ଼ିବ ଓ ଜୟପୁର ରାଜନଅର ସମଗ୍ର ପ୍ରାକୃତିକ ଓଡ଼ିଶା ଏବଂ ଆନ୍ଧ୍ର ଭାଷାଭାଷୀ ଅଞ୍ଚଳର ଦୃଷ୍ଟି ଆକର୍ଷଣ କରିବ ।

ବିଶାଖାପାଟଣାଠାରେ କିନ୍ତୁ ପ୍ରାୟ ୩୫ ବର୍ଷ ଅବସ୍ଥାନ ଓ ସାଧାରଣ କ୍ଷେତ୍ରରେ କାମ କରିଥିବା ଯୋଗୁଁ ବିକ୍ରମଦେବ ବର୍ମା ନିଜ କାର୍ଯ୍ୟଧାରା ତଥା ସ୍ଥାନର ମମତାକୁ ହଠାତ୍ ତ୍ୟାଗ କରିପାରିନଥିଲେ । ସେଠାରେ ସେ ଯେଉଁ ସାଂସ୍କୃତିକ ଜାଗରଣ ସୃଷ୍ଟି କରିଥିଲେ ସେଥିରେ ଭଟ୍ଟାପଡ଼ୁ ବୋଲି ମଧ୍ୟ ସେ ଚାହିଁ ନଥିଲେ । ଏଣୁ ଜୟପୁରରୁ ବିଶାଖାପାଟଣା ଫେରିଲେ । ନିଜର କର୍ମଜଞ୍ଜାଳ ମଧ୍ୟରେ ବି ସେ ଜୟପୁର ସହିତ ସବୁବେଳେ ଯୋଗାଯୋଗ ରଖିବାକୁ ଆରମ୍ଭ କଲେ । ବେଳେବେଳେ ସ୍ୱଳ୍ପ ସମୟ ପାଇଁ ହେଲେ ମଧ୍ୟ ଜୟପୁରରେ ଅବସ୍ଥାନ କରୁଥିଲେ ।

## ଆନ୍ଧ୍ର ସାହିତ୍ୟ ପରିଷଦ ସଭାପତି

ତେଲୁଗୁ ସାହିତ୍ୟ ପାଇଁ ବିକ୍ରମଦେବ ବର୍ମାଙ୍କର ବିପୁଳ ଅବଦାନ ରହିଥିଲା । କେବଳ ପୌରାଣିକ ବା ପ୍ରାଚୀନ ସାହିତ୍ୟ ନୁହେଁ, ଆଧୁନିକ ଆନ୍ଧ୍ର ସାହିତ୍ୟର ବିଭିନ୍ନ ସମସ୍ୟା ଓ ସେସବୁର ସମାଧାନ ପାଇଁ ନିବନ୍ଧମାନ ଲେଖି ବର୍ମା ମହୋଦୟ ବିଭିନ୍ନ ମାସିକ, ପାକ୍ଷିକ, ସାପ୍ତାହିକ ଓ ଦୈନିକ ପତ୍ରପତ୍ରିକାରେ ପ୍ରକାଶ କରାଉଥିଲେ । ତେଲୁଗୁ ସାହିତ୍ୟ ସମାଲୋଚନା

କ୍ଷେତ୍ରରେ ତାଙ୍କର ଭୂମିକା ରହିଥିଲା ଅବିସମ୍ବାଦିତ । ସେ ପ୍ରାମର୍ଶ ଦେଉ-ଥିଲେ "ପ୍ରାଚୀନ ଆଦର୍ଶର ସାର ନେଇ ନୂତନ ଗଠିତ ଓ ସମୃଦ୍ଧ ହେଉ ।" ଏ ଉପଦେଶ ସେତେବେଳେ ସବୁ କ୍ଷେତ୍ରରେ ଗ୍ରହଣୀୟ ହୋଇଥିଲା । ନିଜେ ଗ୍ରନ୍ଥରଚନା କରିବା ବ୍ୟତୀତ ସେ ଅନ୍ୟାନ୍ୟ ଲେଖକଙ୍କର ପାଣ୍ଡୁଲିପି ସଂଶୋଧନରେ ଅଧିକ ସମୟ ଦେଉଥିଲେ । ବାସ୍ତବରେ ସେଥିଲେ ସାହିତ୍ୟିକମାନଙ୍କ ପଥପ୍ରଦର୍ଶକ ଓ ତତ୍ତ୍ୱାବଧାରକ ।

ଏଣୁ ତେଲୁଗୁ ସାହିତ୍ୟର ସର୍ବୋଚ୍ଚ ପ୍ରତିଷ୍ଠାନ 'ଆନ୍ଧ୍ର ସାହିତ୍ୟ ପରିଷଦ'ର ସଭାପତି ଭାବେ ଖ୍ରୀ : ୧୯୨୩ରେ ସର୍ବସମ୍ମତିକ୍ରମେ ନିର୍ବାଚିତ ହୋଇଥିଲେ ବିକ୍ରମଦେବ ବର୍ମା । ସେହି ବର୍ଷ ଗୋଦାବରୀ ଜିଲ୍ଲା ଟୁନିଠାରେ ଅନୁଷ୍ଠିତ ଏହି ପରିଷଦର ବାର୍ଷିକ ସମ୍ମିଳନୀରେ ସଭାପତିତ୍ୱ କରି ଅନେକ ସୁଚିନ୍ତିତ ପରାମର୍ଶ ଦେଇଥିଲେ । ଏଭଳି ସଭାଗୁଡ଼ିକରେ ସେ ଯେଉଁ ହୃଦୟସ୍ପର୍ଶୀ ତେଲୁଗୁ ବକ୍ତୃତାମାନ ଦେଉଥିଲେ ତାହା ଆନ୍ଧ୍ର ସାଂସ୍କୃତିକ ଇତିହାସରେ ଅମୂଲ୍ୟରତ୍ନ ହୋଇରହିଛି ।

## ଝିଅ ମଣିଦେବୀଙ୍କ ବିବାହ

ବିକ୍ରମଦେବ ବର୍ମା ନିଜ ଝିଅ ମଣିଦେବୀଙ୍କୁ ନିଜର ତତ୍ତ୍ୱାବଧାନରେ ସ୍ତ୍ରୀ ଶିକ୍ଷା ଦେଇ ବିଦୁଷୀ କରିପାରିଥିଲେ । ପିତାଙ୍କ ଠାରୁ ଶାସ୍ତ୍ର ଶିକ୍ଷା ସମେତ ମାଆଙ୍କ ଠାରୁ ମଧ୍ୟ ମଣିଦେବୀ ଅନେକ ନୈତିକତା ଶିକ୍ଷା ଗ୍ରହଣ କରିଥିଲେ । ଝିଅକୁ ଜଣେ ଉତ୍ତମ ଗୃହିଣୀ ଭାବେ ଗଢ଼ିବାପାଇଁ ମାଆ ନିଜର ସମସ୍ତ ଦାୟିତ୍ୱ ସୁଚାରୁରୂପେ ସଂପାଦନ କରିଥିଲେ । ମାତ୍ର ୧୫ ବର୍ଷ ବୟସରେ ଖ୍ରୀ : ୧୯୨୫ ଜାନୁଆରୀ ୨୯ ତାରିଖ ଦିନ ମଣିଦେବୀଙ୍କ ବିବାହ ଜୟପୁର ରାଜନଅରରେ ଅନୁଷ୍ଠିତ ହେଲା । ବିକ୍ରମଦେବ ବର୍ମାଙ୍କ ପରିବାର ଏଥିପାଇଁ କିଛି ଦିନ ଜୟପୁରରେ ଅବସ୍ଥାନ କରିଥିଲେ । ଜୟପୁର ରାଜା ରାମଚନ୍ଦ୍ରଦେବ (୪ର୍ଥ) ନିଜ ଖର୍ଚ୍ଚରେ ଏ ବିବାହ ଆୟୋଜନ କରିଥିଲେ । ମହାଆଡ଼ମ୍ବର ସହକାରେ ଏ ଉତ୍ସବ ଅନୁଷ୍ଠିତ ହେଲା । ସମଗ୍ର ପ୍ରାକୃତିକ ଓଡ଼ିଶାର ଅଧିକାଂଶ ଓ ଓଡ଼ିଶା ବାହାରର କେତେକ ରାଜାମହାରାଜା ଏ ଉତ୍ସବରେ ଯୋଗଦେଇଥିଲେ ।

ଏହି ବିବାହ ସଂପର୍କ ସ୍ଥାପିତ ହୋଇଥିଲା ସିଂହଭୂମି ଜିଲ୍ଲା ପଟେଇକଳା ରାଜ୍ୟ ଅନ୍ତର୍ଗତ ଇଚ୍ଛାଗଡ଼ ରାଜବଂଶରେ । ସେହି ବଂଶର ସୁରେଶ୍ୱର ସିଂହଦେଓଙ୍କ ଜ୍ୟେଷ୍ଠ ପୁତ୍ର କୁମାର ବିଦ୍ୟାଧର ସିଂହଦେଓଙ୍କ ସହିତ ମଣିଦେବୀଙ୍କ ବିବାହ ସମାପନ ହେଲା । ସେତେବେଳକୁ ବିଦ୍ୟାଧର ସିଂହଦେଓଙ୍କ ବୟସ ୨୭ ବର୍ଷ । ସେ ଖ୍ରୀ : ୧୮୯୮ ଜୁଲାଇ ମାସରେ ଷଟେଇକଳାଠାରେ ଜନ୍ମଗ୍ରହଣ କରିଥିଲେ ଏବଂ ସିଂହଭୂମି ଜିଲ୍ଲା ସ୍କୁଲରୁ ମାଧ୍ୟମିକ ଶିକ୍ଷା ସମାପ୍ତ କରି ଖ୍ରୀ : ୧୯୧୭ରେ କୃତିତ୍ୱର ସହ ମାଟ୍ରିକ୍ ପାସ ହୋଇଥିଲେ । ଏହାପରେ କୁମାର ବିଦ୍ୟାଧର କଲିକତାର ବିଦ୍ୟାସାଗର କଲେଜରୁ ଖ୍ରୀ : ୧୯୨୨ରେ ବି. ଏ. ପାସ ହୋଇ ଏକ ସଙ୍ଗେ ଏମ୍. ଏ ଏବଂ ବି. ଏଲ୍. ଶିକ୍ଷା ଗ୍ରହଣ ପାଇଁ କଲିକତା ବିଶ୍ୱବିଦ୍ୟାଳୟରେ ଯୋଗ ଦେଇଥିଲେ । ଠିକ୍ ବିବାହ ପୂର୍ବରୁ ଖ୍ରୀ : ୧୯୨୫ରେ ହିଁ ସେ ଆଇନ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ ।

ନିଜର ପୁଅ ନଥିବା ଯୋଗୁଁ ବିଶ୍ୱମଦେବ ବର୍ମା ଝିଅ ଏବଂ ଜ୍ୱାଇଁଙ୍କୁ ବିଶାଖାପାଟଣାଠାରେ ନିଜ ପାଖରେ ରଖିଲେ । ଉଚ୍ଚଶିକ୍ଷିତ ସୁଯୋଗ୍ୟ ଜ୍ୱାଇଁଙ୍କୁ ପାଇ ବିଶ୍ୱମଦେବ ବର୍ମା ପୁତ୍ରାଭାବ କଥା ଭୁଲି ଯାଇଥିଲେ । ଜ୍ୱାଇଁ କୁମାର ବିଦ୍ୟାଧର ସିଂହଦେଓ ବିଶାଖାପାଟଣାଠାରେ ଓକିଲାତି ଆରମ୍ଭ କରି ଅଳ୍ପ କେଇଟି ବର୍ଷ ମଧ୍ୟରେ ପ୍ରତିଷ୍ଠା ଲାଭକରି ପାରିଥିଲେ । ଛାତ୍ରାବସ୍ଥାରୁ ହିଁ ତାଙ୍କର ଇତିହାସ ଓ ପ୍ରତ୍ନତତ୍ତ୍ୱ ଗବେଷଣାରେ ଆଗ୍ରହ ରହିଥିଲା । ସେ ଅନେକ ଐତିହାସିକ ଗବେଷଣା ପ୍ରବନ୍ଧ ଲେଖି ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶ କରିଥିଲେ । ବିଶାଖାପାଟଣାଠାରେ ଓକିଲାତି କରିବା ସଙ୍ଗେସଙ୍ଗେ ଇତିହାସ ଓ ପ୍ରତ୍ନତତ୍ତ୍ୱ ଗବେଷଣାରେ ମଧ୍ୟ କିଛି ସମୟ ବିନିଯୋଗ କରୁଥିଲେ । ଅଦାଲତ ଛୁଟି ଥିବା ଦିନଗୁଡିକରେ ସେ ବିଭିନ୍ନ ଇତିହାସ ପ୍ରସିଦ୍ଧ ସ୍ଥାନ ଦେଖିବା ପାଇଁ ଯାଉଥିଲେ ଓ ତତ୍ସଂକ୍ରାନ୍ତୀୟ ଅଧ୍ୟୟନ ମଧ୍ୟ କରୁଥିଲେ ।

## ମୁଖଲିଙ୍ଗମ୍ କଳିଙ୍ଗ ଦିବସ ଉତ୍ସବ

ପ୍ରାଚୀନ କଳିଙ୍ଗର ରାଜଧାନୀ ତଥା ଇତିହାସ ପ୍ରସିଦ୍ଧ ସହର ମୁଖଲିଙ୍ଗମଠାରେ ଖ୍ରୀ : ୧୯୨୭ ଜୁନ୍ ମଧ୍ୟଭାଗରେ 'କଳିଙ୍ଗ ଦିବସ' ପାଳନ କରାଗଲା ।

ଆନ୍ଧ୍ର ଇତିହାସ ଗବେଷଣା ପରିଷଦ ପକ୍ଷରୁ ଏ ଉତ୍ସବ ଆୟୋଜନ କରାଯାଇଥିଲା । କଳିଙ୍ଗର ଐତିହ୍ୟ ଅତୀବ ମହନୀୟ । ଉକ୍ତ ସମୃଦ୍ଧ ତଥା ବିଶାଳ ରାଜ୍ୟର ଗୌରବାବହ ଇତିହାସ ପର୍ଯ୍ୟାଲୋଚନା ଏ ଉତ୍ସବ ପାଳନର ଉଦ୍ଦେଶ୍ୟ ଥିଲା ।

ମୁଖଲିଙ୍ଗମ ସହର ପାରଳାଖେମୁଣ୍ଡି ରାଜ୍ୟ ଅନ୍ତର୍ଗତ ଏକ ଐତିହାସିକ ଶୈବ ପୀଠ । ଏଣୁ ଆନ୍ଧ୍ର ଗବେଷଣା ପରିଷଦ ପକ୍ଷରୁ ଆୟୋଜିତ ଏ ଉତ୍ସବକୁ ପୃଷ୍ଠପୋଷକତା କରିବା ପାଇଁ ପାରଳା ରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କୁ ଅନୁରୋଧ କରାଯାଇଥିଲା । ସେ ମୁଖଲିଙ୍ଗମ ସ୍ଥିତ ନିଜ ଅଟ୍ଟାଳିକା ଏଥିପାଇଁ ବ୍ୟବହାର କରିବାକୁ ଉଦ୍ୟୋକ୍ତାମାନଙ୍କୁ ଅନୁମତି ଦେଇଥିଲେ ଏବଂ ସମସ୍ତ ଖର୍ଚ୍ଚ ନିଜ ରାଜକୋଷରୁ ବ୍ୟୟ କରିବା ପାଇଁ ଦେୱାନଙ୍କୁ ଆଦେଶ ଦେଇଥିଲେ । ଏ ଉତ୍ସବ ପାଇଁ ଯେଉଁ ଅଭ୍ୟର୍ଥନା ସମିତି ଗଠନ କରାଯାଇଥିଲା ସେଥିରେ ଅଧ୍ୟକ୍ଷ ହୋଇଥିଲେ ବିକ୍ରମଦେବ ବର୍ମା ।

ତିନିଦିନ ଧରି ଚାଲିଥିବା ଏହି ଉତ୍ସବରେ ସଭାପତିତ୍ୱ କରିଥିଲେ ବ୍ରହ୍ମପୁରର ଓକିଲ (ସାର୍) ପଶୁପତି ରାମ ପାତ୍ର । ପ୍ରଥମ ଦିବସ ସଭା ପ୍ରାରମ୍ଭରେ ଅଭ୍ୟର୍ଥନା ସମିତି ଅଧ୍ୟକ୍ଷ ବିକ୍ରମଦେବ ବର୍ମା ତେଲୁଗୁରେ ସ୍ୱାଗତ ଭାଷଣ ଦେଇଥିଲେ । ଏଥିରେ ଆନ୍ଧ୍ର ଏବଂ ଓଡ଼ିଶାର ଯେଉଁ ବିଶିଷ୍ଟ ଐତିହାସିକ, ଗବେଷକ, ସାହିତ୍ୟିକ ଓ ସାମ୍ବାଦିକ ଯୋଗ ଦେଇଥିଲେ ସେମାନଙ୍କ ମଧ୍ୟରେ ପଣ୍ଡିତ ନୀଳକଣ୍ଠ ଦାସ, ଶଶିଭୂଷଣ ରଥ, ରାମମୂର୍ତ୍ତି ପାନ୍ତୁଲୁ, ସୂର୍ଯ୍ୟପ୍ରସାଦ ରାଓ, ତ୍ରିଲୋଚନ ପାଢ଼ୀ, ସୀତାପତି ରାଓ, ନାରାୟଣ ରାଓ, ମାଧବ ରାଓ, ମଲୟ ଶାସ୍ତ୍ରୀ, ଡକ୍ଟର ଶେଷଗିରି ରାଓ, ରାମ ଦାସ, ରାମଲିଙ୍ଗମ ପାନ୍ତୁଲୁ, ଡକ୍ଟର କୃଷ୍ଣସ୍ୱାମୀ, ଅଧ୍ୟାପକ ସୁବା ରାଓ ପ୍ରମୁଖ ଉଲ୍ଲେଖନୀୟ । ପଣ୍ଡିତ ନୀଳକଣ୍ଠ ଦାସଙ୍କ ପଠିତ ଦୀର୍ଘ ଇଂରାଜୀ ପ୍ରବନ୍ଧ 'A short review of the history of Kalinga' ଐତିହାସିକଙ୍କ ମନରେ ଆଲୋଡ଼ନ ସୃଷ୍ଟି କରିଥିଲା ।

ବିକ୍ରମଦେବ ବର୍ମାଙ୍କ ସ୍ୱାଗତ ଭାଷଣ ଥିଲା ଇତିହାସ ଗବେଷଣା ପାଇଁ ପଥପ୍ରଦର୍ଶକ । ସେଥିରେ ସେ କହିଥିଲେ "ଇତିହାସ ଜନସମାଜର ଭଲ

ଏବଂ ମନ୍ଦ ବୁଝିବାର ସୁଚରିତ୍ରବାନ କରାଇଥାଏ । ଇତିହାସବିହୀନ ଦେଶ ସଭ୍ୟ ଦେଶମାନଙ୍କରେ ଗଣିତ ହୋଇପାରେ ନାହିଁ । କେହି କେହି କହନ୍ତି କି ଭାରତରେ ପ୍ରାଚୀନ ଚରିତ ନାହିଁ । କିନ୍ତୁ ସେ ବାକ୍ୟ ଅସତ୍ୟ ଅଟେ । ସମଗ୍ର ଭାରତର ପ୍ରାଚୀନ ଇତିହାସ ଏକାକାରରେ ରଚିତ ହୋଇ ନଥିଲେ ହେଁ, ଭାରତାନ୍ତର୍ଗତ ବିଭିନ୍ନ ଦେଶମାନଙ୍କ ପ୍ରାଚୀନ-ଚରିତାଂଶନିଚୟ ବେଦରେ, ଧର୍ମ ଶାସ୍ତ୍ରମାନଙ୍କରେ, ଅର୍ଥଶାସ୍ତ୍ରମାନଙ୍କରେ, ପୁରାଣମାନଙ୍କରେ, କାବ୍ୟ ନାଟକାଦି ପୁସ୍ତକମାନଙ୍କରେ ଏବଂ ଶିଳାତାମ୍ରାଦି ଶାସନମାନଙ୍କରେ ବର୍ଣ୍ଣିତ ହୋଇଅଛି । ସେ ସବୁର ସତ୍ୟାର୍ଥ ସମୀଚୀନ ରୂପେ ହୃଦୟଙ୍ଗମ କରି ଆମ୍ଭ ଦେଶର ସାଂଗୋପାଂଗ ଇତିହାସ ପ୍ରଣୟନ କରିବା କଷ୍ଟତମ କାର୍ଯ୍ୟ ଅଟେ । ଇତିହାସ ଲେଖକ ଉପରିକଥିତ ପୁସ୍ତକାଦିଙ୍କ ମାତ୍ର ନୁହେଁ; ଗଭର୍ଣ୍ଣମେଣ୍ଟ ରେକର୍ଡ, ଯବନେତିହାସ, ଇଂରେଜଙ୍କ ପ୍ରଣୀତ ପୁସ୍ତକ ଏବଂ ବୌଦ୍ଧ ଜୈନ ଧର୍ମଗ୍ରନ୍ଥ-ମାନଙ୍କୁ ପଢ଼ିବାକୁ ହେବ । କିନ୍ତୁ ଗବେଷକଙ୍କ ପ୍ରଯତ୍ନାବଳୀର ବାଲ୍ୟଦଶା ଆହୁରି ଦୂର ହୋଇନାହିଁ, ତାହାର ମୁଖ୍ୟକାରଣ ହେଉଅଛି ଧନାଭାବ । ଆମ ଦେଶର ପଣ୍ଡିତମାନେ ପ୍ରାୟଶଃ ଧନୀ ନୁହନ୍ତି, ଧନୀମାନେ ପ୍ରାୟଶଃ ପଣ୍ଡିତ ନୁହନ୍ତି । ଦୁଃଖର ବିଷୟ ଏହି ସେ ଧନୀମାନେ ଏ ଦିଗରେ ନିଜ ଧନ ବ୍ୟୟ କରିବାକୁ କୁଣ୍ଠିତ । ଅତଏବ କାର୍ଯ୍ୟ ସୁଚାରୁରୂପେ ଚଳିପାରୁ ନାହିଁ । ଧନୀମାନେ ଇତିହାସର ପ୍ରୟୋଜନକୁ ଭଲରୂପେ ଜାଣି ତାହା ନିର୍ମାଣ ନିମିତ୍ତ ନିଜ ଧନରୁ କେତେକ ଅଂଶ ବ୍ୟୟ କରିବା ସମୁଚିତ ।” ବିଚ୍ଛନ୍ଦଦେବ ବର୍ମାଙ୍କ ଅତିଥିବତ୍ସଳତା ତଥା ସୁପରିଚାଳନା ଯୋଗୁଁ ଉତ୍କଳସମ୍ମିଳନୀର ସମ୍ମିଳନୀରେ ଯୋଗ ଦେଇଥିବା ପ୍ରତିନିଧିମାନେ ସୁଖସ୍ୱାଚ୍ଛନ୍ଦ୍ୟରେ ମୁଖଲାଙ୍ଗମଠାରେ କାର୍ଯ୍ୟ ଶେଷ କରି ଯାଇଥିଲେ ।

## କମିଟି କମିଶନରେ ସାକ୍ଷ୍ୟ ପ୍ରଦାନ

ବିଚ୍ଛନ୍ଦଦେବ ବର୍ମା ସବୁ ଶ୍ରେଣୀର ଲୋକଙ୍କ ସମସ୍ୟା ସହିତ ଜଡ଼ିତ ଥିବା ଯୋଗୁଁ ବିଭିନ୍ନ ସମୟରେ ଭିନ୍ନ ଭିନ୍ନ ସମସ୍ୟାକୁ ନେଇ ଗଠିତ କମିଟି କମିଶନ ଆଗରେ ତାଙ୍କର ସାକ୍ଷ୍ୟ ପ୍ରଦାନର ଗୁରୁତ୍ୱ ରହିଥିଲା । ସେ ଯେଉଁ ସାକ୍ଷ୍ୟ ଦେଉଥିଲେ ସେସବୁ ବିଷୟ ପ୍ରତ୍ୟକ୍ଷ ଅନୁଭୂତି ସମ୍ବଳିତ ଏବଂ ସମାଜରେ ତାଙ୍କର ଉଚ୍ଚସମ୍ମାନ ରହିଥିବା ଯୋଗୁଁ କମିଟି କମିଶନ ବର୍ମା ମହୋଦୟଙ୍କ ସାକ୍ଷ୍ୟକୁ ସବୁବେଳେ ଅଗ୍ରାଧିକାର ଦେଉଥିଲେ ।

ଉତ୍କଳ ସମ୍ମିଳନୀର ଦାବୀ—ଦେଶ ମିଶ୍ରଣକୁ ନେଇ ସମଗ୍ର ଭାରତ ଏପରିକି ବ୍ରିଟିଶ୍ ସରକାରଙ୍କ ରାଜଧାନୀ ଇଂଲଣ୍ଡରେ ମଧ୍ୟ ହାଇତୋଳ ସୃଷ୍ଟି ହୋଇଥିଲା । ସମସ୍ତ ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଏକଶାସନାଧୀନ କରିବା ପାଇଁ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ସକାଶେ ସାଧାରଣ ଲୋକଙ୍କ ଦାବୀ ବ୍ରିଟିଶ ସରକାରଙ୍କୁ ଅଣନଶ୍ୱାସୀ କରି ଦେଇଥିଲା । ଫଳରେ ସେମାନଙ୍କର ଦାବୀର ଯଥାର୍ଥତା ଓ ମାନ୍ଦ୍ରାଜ ଓଡ଼ିଆଙ୍କ ମନୋଭାବ ଅନୁଧ୍ୟାନ କରିବାପାଇଁ ସରକାର ତତ୍କାଳୀନ ଓଡ଼ିଶା ଗଡ଼ଜାତ ସମୂହର ପଲିଟିକାଲ ଏଜେଣ୍ଟ ସି. ଏଲ. ଫିଲିପ ଏବଂ ବିଶାଖାପାଟଣା ଜିଲ୍ଲା କଲେକ୍ଟର ଏ. ସି. ଡଫଙ୍କୁ ନେଇ ଖ୍ରୀ ୧୯୨୪ରେ ଏକ କମିଟି ଗଠନ କରିଥିଲେ । ଏ କମିଟି ବିଭିନ୍ନ ଅଞ୍ଚଳ ବୁଲି ସାକ୍ଷ୍ୟ ଗ୍ରହଣ କରିଥିଲେ ।

ବିଶାଖାପାଟଣା ଓଡ଼ିଆ ସମାଜର ସଭାପତି ଭାବେ ବୀରକୃଷ୍ଣ ବର୍ମା ବହୁ ଓଡ଼ିଆଙ୍କୁ ସାଙ୍ଗରେ ନେଇ ଫିଲିପ-ଡ଼ଫଙ୍କ ଆଗରେ ସାକ୍ଷ୍ୟ ଦେଇଥିଲେ । ବର୍ମା ମହୋଦୟ ଦେଶ ମିଶ୍ରଣ ସପକ୍ଷରେ ସମସ୍ତ ଓଡ଼ିଆ ଭାଷାଭାଷୀଙ୍କୁ ଏକ-ଶାସନାଧୀନ କରିବା ସକାଶେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଦାବୀ କରିଥିଲେ । ମାନ୍ଦ୍ରାଜ ପ୍ରଦେଶ ଅନ୍ତର୍ଗତ ଓଡ଼ିଆ ଭାଷାଭାଷୀ ଅଞ୍ଚଳ ଓଡ଼ିଶା ସହିତ ମିଶିବା ଉଚିତ ବୋଲି ସେ ସାକ୍ଷ୍ୟ ପ୍ରଦାନବେଳେ କହିଥିଲେ । ଏ ଦାବୀର ଯଥାର୍ଥତା ଉପଲବ୍ଧି କରି ଫିଲିପ-ଡ଼ଫ ତାଙ୍କର ରିପୋର୍ଟରେ ଲେଖିଥିଲେ—"Our enquiry has shown that there is a genuine longstanding and deep rooted desire on the part of the educated Oriya classes of the Oriya speaking tracts of Madras for amalgamation of these tracts with Orissa under one administration. It is unquestionable that wherever the Oriya raiyots have learned something of the matter, they are entirely in favour of amalgamation". କିନ୍ତୁ ସରକାର ଏହି ରିପୋର୍ଟ ଉପରେ କୌଣସି କାର୍ଯ୍ୟାନୁଷ୍ଠାନ ଗ୍ରହଣ ନକରି ନୀରବ ରହିଥିଲେ ।

ଭାରତରେ ବାଲ୍ୟ ବିବାହ ଉଚ୍ଛେଦ ପାଇଁ ବ୍ରିଟିଶ ସରକାର ଖ୍ରୀ ୧୯୨୯ରେ ଏକ ଆଇନ ପ୍ରଣୟନ ପାଇଁ ଉଦ୍ୟମ କରିଥିଲେ । ସେତେ-

ବେଳେ ଏହା ବିପକ୍ଷରେ ଓ କେତେକ ସ୍ଥଳେ ସପକ୍ଷରେ ବିଭିନ୍ନ ମହଲରୁ ଭିନ୍ନ ଭିନ୍ନ ମତ ପ୍ରକାଶ ପାଇଲା । ଏଣୁ ଜନମତ ସଂଗ୍ରହ ପାଇଁ କମିଶନ ଗଠିତ ହୋଇଥିଲା । ଉକ୍ତ କମିଶନ ସମଗ୍ର ଦେଶର ବଡ଼ ବଡ଼ ସହରରେ ସାକ୍ଷ୍ୟ ଗ୍ରହଣ କରିଥିଲେ । ବୀରବରଦେବ ବର୍ମା ବାଲ୍ୟ ବିବାହ ସପକ୍ଷରେ ମତ ଦେଇଥିଲେ । ବିଭିନ୍ନ ଶାସ୍ତ୍ରର ବ୍ୟାଖ୍ୟା କରି ସେ କହିଥିଲେ ଯେ— 'ଭିନ୍ନ ଧର୍ମାବଲମ୍ବୀ ବିଜାତୀୟ ସରକାର ଦ୍ୱାରା ହିନ୍ଦୁ ସଂପ୍ରଦାୟର ସମାଜ ସଂସ୍କାର ବାଞ୍ଛନୀୟ ନୁହେଁ' । ବିଶେଷତଃ ଆଇନ ବଳରେ ଧର୍ମରେ ହସ୍ତକ୍ଷେପକୁ ସେ ନାପସନ୍ଦ କରି ଏହି ସାକ୍ଷ୍ୟ ପ୍ରଦାନ କରିଥିଲେ ।

ବ୍ରିଟିଶ ସରକାର ଖ୍ରୀ: ୧୯୨୯ରେ ଶ୍ରମିକମାନଙ୍କ ସମସ୍ୟା ଅନୁଧ୍ୟାନପାଇଁ Royal Commission on Labourଙ୍କୁ ଭାରତର ବିଭିନ୍ନ ସ୍ଥାନ ବୁଲି ସାକ୍ଷ୍ୟ ଗ୍ରହଣ କରିବା ସକାଶେ ଆଦେଶ ଦେଇଥିଲେ । ଏ କମିଶନ ପହଞ୍ଚିବା ଅବସରରେ, ବିଶାଖାପାଟଣାଠାରେ ବୀରବରଦେବ ବର୍ମା ସାକ୍ଷ୍ୟ ପ୍ରଦାନ କରି କହିଥିଲେ—"ଜୟପୁର ଓ ଗଞ୍ଜାମ ଜିଲ୍ଲାର ମାଳ ଅଞ୍ଚଳରୁ ପ୍ରତିବର୍ଷ ଲକ୍ଷାଧିକ ଲୋକ ସୁଦୂର ଆସାମ ଯାଇ ସେଠାକାର 'ଟି' ବଗିଚାରେ କୁଲି କାମ କରନ୍ତି । ସେହି ବଗିଚାଗୁଡ଼ିକ ବିଲାତର କେତେକ ଧନୀ ଗୋରାଙ୍କ ସମ୍ପତ୍ତି । ସେମାନେ ଏ ଅଞ୍ଚଳରୁ ଲୋକ ନେଇ 'ଟି' ବଗିଚାରେ କାମ କରନ୍ତି । ଏଠାରୁ କୁଲି ସଂଗ୍ରହ କରିବାପାଇଁ ସ୍ଥାନେ ସ୍ଥାନେ କେତେଗୋଟି କୁଲି ସଂଗ୍ରହ କେନ୍ଦ୍ର (Assam Tea Labour Depot) ଖୋଲା ଯାଇଛି । ତନ୍ମଧ୍ୟରୁ ଜୟପୁର ନିକଟସ୍ଥ କୋରାପୁଟ କେନ୍ଦ୍ର, ପାର୍ବତୀପୁର ଓ ପାରଳାଖେମୁଣ୍ଡି କେନ୍ଦ୍ରମାନ ପ୍ରଧାନ । ଏପରି କେନ୍ଦ୍ର ଖୋଲି ଏ ଅଞ୍ଚଳର ଲୋକମାନଙ୍କୁ ନେବା ପାଇଁ ଭାରତ ସରକାର ଆସାମ ଗୋରାମାନଙ୍କୁ ବିଶେଷ ସାହାଯ୍ୟ କରୁଥିବାର ଜଣାଯାଏ । ଲୋକମାନେ ଯେତେ ଦରିଦ୍ର ହୁଅନ୍ତୁ, ସେମାନେ ତ ଦେଶର ସମ୍ପତ୍ତି । ସେମାନଙ୍କୁ ସ୍ଥାନାନ୍ତରିତ କରିବାଦ୍ୱାରା ଏ ଅଞ୍ଚଳରେ ଜନସଂପଦ କମ୍ ହେଉଅଛି । ସେଥିପ୍ରତି କମିଶନ ଦୃଷ୍ଟି ଦେଇ ଉଚିତ କାର୍ଯ୍ୟାନୁଷ୍ଠାନ ପାଇଁ ସରକାରଙ୍କୁ ପରାମର୍ଶ ଦିଅନ୍ତୁ ।"

ଭାରତରେ ଶାସନ ସଂସ୍କାର ସଂପର୍କରେ ଅନୁଧ୍ୟାନ କରିବା ପାଇଁ ଯେଉଁ ସାଇମନ କମିଶନ ଖ୍ରୀ: ୧୯୨୭ ରେ ଗଠିତ ହୋଇ ୧୯୨୮ ପ୍ରାରମ୍ଭରେ ଏ ଦେଶର ବିଭିନ୍ନ ଅଞ୍ଚଳ ପରିଦର୍ଶନ କରିଥିଲେ, ତାହାକୁ ଭାରତୀୟ ଜାତୀୟ କଂଗ୍ରେସ ବିରୋଧ କରିଥିଲା । ଓଡ଼ିଶା ପ୍ରଦେଶ ଗଠନ ଦାବୀ

ନେଇ ଉତ୍କଳ ସମ୍ମିଳନୀ କିନ୍ତୁ ସାଇମନଙ୍କୁ ସ୍ୱାଗତ କରିଥିଲା ଓ ଦାବୀପତ୍ର ମଧ୍ୟ ଦେଇଥିଲା । ଏ ମଧ୍ୟରେ ଉକ୍ତ ସାଇମନ କମିଶନ ରିପୋର୍ଟ ପ୍ରକାଶ ପାଇଲା । ରିପୋର୍ଟରେ ମାନ୍ଦ୍ରାଜ ପ୍ରଦେଶ ସ୍ଥିତ ଓଡ଼ିଆଙ୍କର ସ୍ୱାର୍ଥହାନି ହେଲାଭଳି କେତେକ ମନ୍ତବ୍ୟ ରହିଥିବା ଯୋଗୁଁ ବିକ୍ରମଦେବ ବର୍ମା ଏହାର ତର୍ଜମା କରି ଖ୍ରୀ: ୧୯୩୦ ଜାନୁଆରୀ ୧୫ ତାରିଖରେ Madras Oriyas and the Simon Commission ଶିରୋନାମାରେ ଏକ ମୁଦ୍ରିତ ପୁସ୍ତିକା ବିତରଣ କରିଥିଲେ । ଏହି ପୁସ୍ତିକା ପ୍ରଚାର ଯୋଗୁଁ ଓଡ଼ିଶାର ଓଡ଼ିଆ ଲୋକେ କମିଶନ ରିପୋର୍ଟ ସଂପର୍କରେ ସଚେତନ ହେଲେ ଏବଂ ଇଂରାଜୀରେ ମୁଦ୍ରିତ ହୋଇଥିବା ଯୋଗୁଁ ଅଣଓଡ଼ିଆମାନେ ମଧ୍ୟ ଓଡ଼ିଆଙ୍କ ପ୍ରକୃତାବସ୍ଥା ଜାଣି ପାରିଥିଲେ ।

## MADRAS ORIYAS AND THE SIMON COMMISSION

The recommendation for a boundary Commission along with a few words of sympathy in the Report of the Simon Commission seems to have caught the imagination of some of our friends. The readers have to realise the problem of the Oriyas is quite distinct and separate from the larger one of a federation of India on the basis of linguistic provinces. The object though desirable cannot be one for immediate realisation. In this first place a language like Malayalam may not require a province unless the question of the inclusion of her States like Cochin and Travancore also in the federation is solved. The Assamese, after the amalgamation of Bengalee population in the Burma valley in Assam may not be eternally spoon-fed by the Federal Government. Orissa with her one and half crores of people cannot be kept waiting till the proposed Commission sits and decides the general question, no one knows when. Again political leaders in India may not wel-

come such a commission before the basic political-relations between India and England are decided. The proposal to constitute a commission is thus uncalled for under the present conditions and circumstances.

**Still Recommendations ;**

We have long passed the stage of recommendations. The readers of Blue-Books from 1902 to 1905 will see that the Government of Lord Curzon made their recommendations after a long and elaborate enquiry. The coronation despatches of 1911 speak of the grave injustice done to Orissa and resulted only in creating confusion worse confounded by adding the present political Orissa Division to the newly created Province of Bihar and Orissa. The Montford Report made a special recommendation to the reformed Government to take early action regarding Orissa and Bihar as an urgent and immediate case for their consideration. Agitation from the people has been continuous, persistent, vigorous and spread all over the Oriya speaking tracts. Public opinion on this question was so strong that the Government of India was obliged to appoint the Phillip-Duff Commission for a detailed enquiry. The Government of Orissa deputed a special officer for the collection of further materials. The Simon Commission appointed a sub-committee to make detailed proposals on this question. Why then a fresh enquiry and the question made a part of the general one of the creation of provinces in India on a language basis ? This, to say the least, is only an attempt to hood-wink public opinion on the plea of an enquiry.

**For the Enquiry :**

The Sub-Committee of Simon Commission seems to have tackled the question neither properly nor fairly so far as their recommendations relate to the Oriya speaking tracts of Madras. No reason was assigned why the Vizagpatanam Agency as also the Taluks of Sompeta, Parlakimidi and Tekkali in Ganjam are to be excluded from the proposed Oriya Province. From a reply given to Sriman Biswanath Das Mahasay to a series of his interpellations, the Government of Madras admitted that figures of Vizagapatam Agency have not been called for, by the Commission and that they had to furnish only such information as was required by them. These prove beyond doubt that the Sub-Committee has not at all considered the necessity of the inclusion of Vizagpatanam Agency in the new Oriya Province. In my article published in the "East Coast" as also in the Dailies of Madras, I have clearly shown from official reports how the Vizagpatanam Agency is predominantly Oriya a fact recognised by the Government in all its reports and publications. Oriyas form the majority of the population in the Agency. Oriya has been the court language and the language taught to the Khonds ever since the British occupation of the Agency. Again Khonds have all their kinsmen in the adjoining Oriya tributary States and British areas of Orissa. I have quoted Mr. Macpherson and other special officers deputed to the Khond area with their findings that the Oriyas even in the fifties of the last century had as close and intimate a relation with the Khonds as they have today. Some military authorities were also quoted in my letter showing the

stratage importance of this proposal. Regrettable therefore, that the inclusion of this extensive and important area should have altogether been omitted by a set of gentlemen who called themselves responsible and earnest.

**Importance of the area and view of the Andhras :**

The Oriya portion of Vizagapatam Agency consists of about 12000 (twelve thousand) square miles surrounded on three sides by the Oriya speaking tracts of the Orissa Division, the Oriya Agency tracts of Ganjam and the Tributary States of Orissa. This vast area is being connected with the Railway system connecting the Central Provinces with the sea board at Vizagapatam. The agency with its vast area of forests, fertile plains and the mineral wealth is bound to play an important part in the economic history of any province to which it may be attached. If this vast area is to be added to the Andhra Province to be you not only decide the entire Khond and Savara population between two provinces, but also undo all the work done during a period of 100 years or British rules and leave a big discontented minority community of Oriyas in the Andhra country which will neither add to their peaceful growth nor be conducive to a peaceful administration. With this view the Andhra leaders never claimed the Vizagapatanam Agency for inclusion in the proposed Andhra Province. This is seen from the pamphlet published by the Andhra Provincial Committee as also from the written and oral evidence of the Andhra representatives before the Joint Select Committee of both Houses of Parliament on the Government of India Bill of 1919. Let

not any one, therefore, be deceived by the recommedation of the Simon Commission so far as Orissa is concerned. We cannot allow scattered limbs of Orissa to be turn as under in the way proposed by a commission which never waited to solve the problem. The proper course for the Oriyas, therefore, is not to accept the recommendations, unless the Oriya speaking tracts of rhe Vizagapatam Agency are included in the proposed Orissa province.

## ଜୀବନର ଅପରାହ୍ଣ

ବିକ୍ରମଦେବ ବର୍ମାଙ୍କୁ ଖ୍ରୀ: ୧୯୩୦ ମଧ୍ୟଭାଗରେ ୬୧ ବର୍ଷ ପୂର୍ତ୍ତି ହେଲା । ସେ ୬୨ ବର୍ଷ ବୟସରେ ପଦାର୍ପଣ କରିଥିଲେ ମଧ୍ୟ କୌଣସି ଅବଶ ନଥାଇ ନିଜ କର୍ମରେ ଚଳଚଞ୍ଚଳ ଥିଲେ । ସ୍ୱାସ୍ଥ୍ୟରକ୍ଷା ପାଇଁ ପ୍ରତିଦିନ ସେ ସକାଳ ଓ ସନ୍ଧ୍ୟାରେ କୁସ୍ତି କସରତ କରୁଥିଲେ । ବ୍ୟାୟାମ ଥିଲା ତାଙ୍କର ସବୁଦିନିଆ ଅଭ୍ୟାସ । ନିଜ ସ୍ୱାସ୍ଥ୍ୟ ସଂପର୍କରେ ସେ ନିଜେ କହୁଥିଲେ – ତାଙ୍କୁ ତିନିବର୍ଷ ବୟସରେ ବାମ ଜଂଘରେ ଏକ ବ୍ରଣ ହେବା ଯୋଗୁଁ ସେ କିଛିଦିନ କଷ୍ଟ ପାଉଥିଲେ । ଏହାପରେ ଆଉ କୌଣସି ରୋଗ ବ୍ୟାଧି ହୋଇନାହିଁ ।

ବିଶାଖାପାଟଣାଠାରେ ବର୍ମା ମହୋଦୟଙ୍କ ସାଂସ୍କୃତିକ କାର୍ଯ୍ୟକ୍ରମ ଅବ୍ୟାହତ ରହିଥିଲା । ଜଟନ୍ଦିର ସ୍ଥଳଠାରେ ତାଙ୍କଦ୍ୱାରା ନିର୍ମିତ ସ୍ଥାୟୀ ରଙ୍ଗମଞ୍ଚ ଖ୍ରୀ: ୧୯୨୩ର ଝଡ଼ତୋଫାନରେ ଭାଙ୍ଗିଯିବାପରେ ସେ ପୁଣି ଆତୁର ଭଲ ସ୍ଥାନରେ ନୂଆ ରଙ୍ଗମଞ୍ଚ ତିଆରି କରିଥିଲେ । ଓଡ଼ିଆ ଓ ତେଲୁଗୁ ନାଟକ ମଞ୍ଚସ୍ଥ ଧାରାବାହିକ ଭାବେ ଚାଲୁଥିଲା । ଦର୍ଶକମାନଙ୍କଠାରୁ ଟାଙ୍କା ଆଦାୟର କୌଣସି ବ୍ୟବସ୍ଥା ନଥିଲା । କେବଳ ବଦାନ୍ୟ ବ୍ୟକ୍ତିଙ୍କ ଆର୍ଥିକ ସହଯୋଗ ଓ ନିଜ ଖର୍ଚ୍ଚରେ ବିକ୍ରମଦେବ ବର୍ମା ଏହି ରଙ୍ଗମଞ୍ଚ ଚଳାଇ ଥିଲେ । ଏ ମଧ୍ୟରେ ସେ ଖ୍ରୀ. ୧୯୨୮ରେ ପାଟଣା ବିଶ୍ୱବିଦ୍ୟାଳୟ ଓଡ଼ିଆ ପାଠ୍ୟକ୍ରମ ନିର୍ଦ୍ଧାରଣ ବୋର୍ଡର ସଭ୍ୟ ମନୋନୀତ ହୋଇଥିଲେ । ପ୍ରାକୃତିକ ଓଡ଼ିଶାର ଯେଉଁ ଅଂଶମାନ ବିହାର-ଓଡ଼ିଶା ପ୍ରଦେଶ ଅନ୍ତର୍ଭୁକ୍ତ

ଥିଲା ସେ ସେହି ଅଞ୍ଚଳର ଗୁଣଗ୍ରାହୀଙ୍କ ସକାଶେ ଓଡ଼ିଆ ଭାଷା ସାହିତ୍ୟର ପାଠ୍ୟ ନିର୍ଦ୍ଧାରଣ ପାଇଁ ପରାମର୍ଶ ଦେଉଥିଲେ । ସେଥିପାଇଁ ବେଳେବେଳେ ବନମ ଦେବ ବର୍ମା ବଣାଖାପାଟଣାରୁ ପାଟଣା ବିଶ୍ୱବିଦ୍ୟାଳୟକୁ ଯାଇ, କାର୍ଯ୍ୟ ଶେଷ ହେବାପରେ ଫେରୁଥିଲେ ।

ଏତିକବେଳକୁ କଟକଠାରେ ଗୋପାଳଚନ୍ଦ୍ର ପ୍ରହରାଜ 'ପୂର୍ଣ୍ଣଚନ୍ଦ୍ର ଭାଷାକୋଷ' ପ୍ରଣୟନରେ ଲାଗିଥାଆନ୍ତି । ଏଥିପାଇଁ ନିରବଚ୍ଛିନ୍ନ ଭାବେ ଏକ ଅଫିସ କାମ କରୁଥାଏ । ପ୍ରାକୃତିକ ଓଡିଶାର ବିଭିନ୍ନ ଅଞ୍ଚଳରୁ ବହୁ ଶିକ୍ଷିତ ଯୁବକ କଟକ ଆସି ଏହି ଭାଷାକୋଷ ଅଫିସରେ ଅବୈତନିକ ଭାବେ କାମ କରୁଥାଆନ୍ତି । ବୁଦ୍ଧିଜୀବୀ, ଶିକ୍ଷାବିତ୍‌ ଓ ଭାଷାତତ୍ତ୍ୱ ବିଶାରଦ-ମାନେ ଏ ରାଜ୍ୟର ବିଭିନ୍ନ ଅଞ୍ଚଳରେ ବ୍ୟବହୃତ ଶବ୍ଦସବୁର ତାଲିକା ପଠାଉ-ଥିଲେ । ଏହି ସମୟରେ ବନମଦେବ ବର୍ମା ଗଞ୍ଜାମ, ଜୟପୁର ଓ ବଣାଖାପାଟଣା ଅଞ୍ଚଳରେ ବ୍ୟବହୃତ କେତେକ ନିର୍ଦ୍ଦିଷ୍ଟ ଶବ୍ଦର ତାଲିକା ଗୋପାଳଚନ୍ଦ୍ର ପ୍ରହରାଜଙ୍କ ପାଖକୁ ପଠାଇଥିଲେ । ସେସବୁ ଶବ୍ଦର ଅର୍ଥ ଓ ବ୍ୟବହାର ଉଦାହରଣ ମଧ୍ୟ ବର୍ମା ମହୋଦୟ ଯୋଗାଇ ଦେଇଥିଲେ । ଭାଷାକୋଷ ପ୍ରଥମ ଭାଗରେ ସଂକଳକ ପ୍ରହରାଜ ଶୁଭେଚ୍ଛୁ ଓ ସହଯୋଗୀମାନଙ୍କ ଫଟୋଚିତ୍ର ଛାପି ଥିଲେ ! ସେଥିରେ ବନମଦେବ ବର୍ମାଙ୍କ ଫଟୋ ସ୍ଥାନ ପାଇଥିଲା ।

ଗୋପାଳଚନ୍ଦ୍ର ପ୍ରହରାଜ ଏଭଳି ବ୍ୟୟବହୁଳ କାର୍ଯ୍ୟ ହାତକୁ ନେଇଥିଲେ ମଧ୍ୟ କେବଳ ନିଜସ୍ୱ ସମ୍ବଳ ଓ ବଦାନ୍ୟ ବ୍ୟକ୍ତିଙ୍କ ଆର୍ଥିକ ସାହାଯ୍ୟରେ କାମ ଆଗେଇ ଚାଲିଥିଲା । କୌଣସି ସରକାରୀ ସାହାଯ୍ୟ ପାଉନଥିଲେ । ଏ ସମ୍ପର୍କରେ ସର୍ବପ୍ରଥମେ ବନମଦେବ ବର୍ମା ବଣାଖାପାଟଣାରୁ ବିହାର-ଓଡ଼ିଶା ସରକାରଙ୍କୁ ଏକ ଦୀର୍ଘ ଚିଠି ଲେଖି ସାହାଯ୍ୟ ପାଇଁ ଦୃଷ୍ଟି ଆକର୍ଷଣ କରାଇ ଥିଲେ ।

ବର୍ମା ମହୋଦୟ ପ୍ରତିଦିନ ଅଧିକାଂଶ ସମୟ ସାହିତ୍ୟ ଆଲୋଚନା ଓ ଲେଖାଲେଖିରେ ନିମଯୋଗ କରୁଥିଲେ । ଏ ମଧ୍ୟରେ ତାଙ୍କର ୧୯୨୪ ରେ 'ହିଂକାରମନ ବିଧାନଂ' ଏବଂ ୧୯୨୫ ରେ 'କାଦମ୍ବରୀ କଥାସାର' ପୁସ୍ତକ ଦୁଇଟି ବ୍ରହ୍ମପୁର ଆଶା ପ୍ରେସରେ ଶଶିଭୂଷଣ ରଥଙ୍କ ଦ୍ୱାରା ମୁଦ୍ରିତ ହୋଇ ପ୍ରକାଶ ପାଇଥିଲା । ବିବାହ, ବ୍ରତ ଓ ଅନ୍ୟାନ୍ୟ ମାଙ୍ଗଳିକ କାର୍ଯ୍ୟ ସମାପନ

ପାଇଁ ଆବଶ୍ୟକ ହେଉଥିବା ସଂସ୍କୃତ ଶ୍ଳୋକର ଓଡ଼ିଆ ଅନୁବାଦ ଏଥିରେ ସ୍ଥାନ ପାଇଥିଲା । 'କାଦମ୍ବିନୀ କଥାସାର' ବାଣଭଟ୍ଟଙ୍କ କାଦମ୍ବିନୀ ସଂସ୍କୃତ ମହାକାବ୍ୟର ଓଡ଼ିଆ ଅନୁବାଦ । ସେହିଭଳି ବିକ୍ରମଦେବ ବର୍ମା ତୁଳସୀ ଦାସଙ୍କ 'ରାମଚରିତ ମାନସ' ଓଡ଼ିଆକୁ ଅନୁବାଦ ଆରମ୍ଭ କରିଥିଲେ । ଓଡ଼ିଆରେ ସେତେବେଳଯାଏଁ ତୁଳସୀ ରାମାୟଣର ଅନୁବାଦ ହୋଇନାହିଁ ମନେକରି ଏଥିରେ ସେ ହାତ ଦେଇଥିଲେ । କିନ୍ତୁ ଏହାର ଆଦିକାଣ୍ଡ ସମାପନ ବେଳକୁ ଅନ୍ୟ ଜଣେ ଅନୁବାଦକଙ୍କ ଗ୍ରନ୍ଥ ପ୍ରକାଶ ପାଇଥିଲା । ଏଣୁ ବିକ୍ରମଦେବ ବର୍ମା ନିଜର ଅନୁବାଦ କାର୍ଯ୍ୟବନ୍ଦ କରିଦେଲେ । ଲେଖା ସରିଥିବା ଆଦିକାଣ୍ଡ କଟକର ଉତ୍କଳ ସାହିତ୍ୟ ପ୍ରେସ୍‌ରୁ ଖ୍ରୀ: ୧୯୨୭ ରେ ପ୍ରକାଶ ପାଇଥିଲା ।

ଏହା ବ୍ୟତୀତ ବ୍ରହ୍ମପୁରରୁ ଶଶିଭୂଷଣ ରଥଙ୍କ ସଂପାଦନାରେ ଖ୍ରୀ: ୧୯୧୭ ଠାରୁ କିଛି ବର୍ଷ ପାଇଁ ପ୍ରକାଶ ପାଉଥିବା ମାସିକ ସାହିତ୍ୟ ପତ୍ରିକା 'ପ୍ରଭାତ'ରେ ବିକ୍ରମଦେବ ବର୍ମାଙ୍କ ଅନେକ ସୁଚିନ୍ତିତ ପ୍ରବନ୍ଧ ସ୍ଥାନ ପାଇଥିଲା ଓ ଅନ୍ୟାନ୍ୟ ଓଡ଼ିଆ ଏବଂ ତେଲୁଗୁ ପତ୍ରପତ୍ରିକାରେ ନିୟମିତ ଭାବେ ନିବନ୍ଧ, କବିତା ତଥା ଲଘୁକଥାମାନ ପ୍ରକାଶ ପାଉଥିଲା ।

## ଜୟପୁର ରାଜ୍ୟପ୍ରାପ୍ତି

ବିକ୍ରମଦେବ ବର୍ମା ୭୨ ବର୍ଷ ବୟସରେ ବିଶାଳ ଜୟପୁର ରାଜ୍ୟର ରାଜା ହେଲେ । ଏହା ଥିଲା ସମ୍ପୂର୍ଣ୍ଣ ଅଯାଚିତ ଏବଂ ଆକସ୍ମିକ । ଜୟପୁରରେ ରାଜା ଥିବା ରାମଚନ୍ଦ୍ର ଦେବ (୪ର୍ଥ) ତୀର୍ଥ ଭ୍ରମଣରେ ଯାଇ ଖ୍ରୀ: ୧୯୩୧ ଫେବୃଆରୀ ୨୦ ତାରିଖରେ ମୃତ୍ୟୁମୁଖରେ ପଡ଼ିଲେ । ଗଙ୍ଗା ଯମୁନାର ସଂଗମ ସ୍ଥଳ ପ୍ରୟାଗଠାରେ ତାଙ୍କର ଦେହାନ୍ତ ହେଲା । ସେ ଖ୍ରୀ: ୧୯୨୦ରେ ରାଜଗାଦି ଗ୍ରହଣ କରି ୧୧ ବର୍ଷ ଶାସନ କରିଥିଲେ । ବିଶାଖାପାଟଣାଠାରେ ରହିଥିବା ବିକ୍ରମଦେବ ବର୍ମାଙ୍କୁ ସେ ପିତୃତୁଲ୍ୟ ଭକ୍ତି କରୁଥିଲେ ଏବଂ ବର୍ମା ମହୋଦୟ ମଧ୍ୟ ରାମଚନ୍ଦ୍ର ଦେବଙ୍କୁ ପୁତ୍ର ସ୍ନେହ ପ୍ରଦାନ କରିଥିଲେ । ଏଣୁ ବିକ୍ରମଦେବ ବର୍ମା ଏ ମୃତ୍ୟୁରେ ବ୍ୟଥିତ ହୋଇଥିଲେ । ରାମଚନ୍ଦ୍ର ଦେବ ଅପୁତ୍ରିକ ଥିଲେ । ସେଥିଯୋଗୁଁ ଜୟପୁର ରାଜ୍ୟର ଉତ୍ତରାଧିକାରୀ କିଏ—ଏ ପ୍ରଶ୍ନ ସମସ୍ତଙ୍କ ମନରେ ଉଙ୍କିଥିଲା ।

ବ୍ରିଟିଶ୍ ସରକାର ହଠାତ୍ ଘୋଷଣା କଲେ ଯେ ଜୟପୁର ରାଜବଂଶର ଏକମାତ୍ର ଜୀବିତ ସୁଯୋଗ୍ୟ ବ୍ୟକ୍ତି ରାମଚନ୍ଦ୍ରଦେବ ବର୍ମା ଜୟପୁରର ରାଜସିଂହାସନ ଅଳଂକୃତ କରିବେ । ଏ ଘୋଷଣା ପ୍ରକାଶ ପାଇଲା ଖ୍ରୀ: ୧୯୩୧ ଜୁନ୍ ମାସ ପ୍ରାରମ୍ଭରେ ଏବଂ ରାମଚନ୍ଦ୍ରଦେବବର୍ମା ଜୁନ ୫ ତାରିଖରେ ରାଜସିଂହାସନ ଅଳଂକୃତ କଲେ । ସେ ସୁସାହିତ୍ୟିକ, ପରୋପକାରୀ ଓ ଦେଶଭକ୍ତଭାବେ ସମଗ୍ର ଓଡ଼ିଶା ଏବଂ ମାନ୍ଦ୍ରାଜ ପ୍ରଦେଶରେ ସୁପରିଚିତ ଥିଲେ । ଏଣୁ ଉଭୟ ପ୍ରଦେଶର ଜନସାଧାରଣ ଓ ବୁଦ୍ଧିଜୀବୀ ମହଲ ଏଥିରେ ଆନନ୍ଦିତ ହୋଇ-ଥିଲେ । ଶୁଭେଚ୍ଛା ବାର୍ତ୍ତା ବହନ କରି ଶହ ଶହ ଟେଲିଗ୍ରାମ ଆସି ତାଙ୍କ ପାଖରେ ପହଞ୍ଚିଥିଲା ।

ଜୁନ୍ ୫ ତାରିଖ ସକାଳେ ରାମଚନ୍ଦ୍ରଦେବ ବର୍ମା ବିଶାଖାପାଟଣାଠାରୁ ଜୟପୁର ଗଲେ । ଜୟପୁର ରାଜ୍ୟର ପ୍ରଜା ଓ ରାଜକର୍ମଚାରୀ ହଜାର ହଜାର ସଂଖ୍ୟାରେ ରାଜ୍ୟସୀମାରେ ଅପେକ୍ଷାକରି ରହିଥିଲେ । ବାଣ ପଟୁଆର, ଶଙ୍ଖହୁଳହୁଳି ଧ୍ୱନି ମଧ୍ୟରେ ତାଙ୍କୁ ପାଛୋଟି ନିଆଗଲା । ସ୍ୱତନ୍ତ୍ର ନିର୍ମିତ ଏକ ସୁସଜ୍ଜିତ ମଞ୍ଚ ଉପରେ ପ୍ରଥମରେ ସମ୍ବର୍ଦ୍ଧନା ଦିଆଗଲା । ବହୁସଂଖ୍ୟକ ପଣ୍ଡିତ ବେଦଧ୍ୱନି ସୃଷ୍ଟି କରୁଥିଲେ । ହରିବୋଲ ହୁଳହୁଳି ଧ୍ୱନିରେ ଆକାଶ କମ୍ପି ଉଠୁଥିଲା । ଜୟପୁରକୁ ଘେରି ରହିଥିବା ସୁଉଚ୍ଚ ପାହାଡ଼ କନ୍ଦରରୁ ଏସବୁ ଧ୍ୱନିର ପ୍ରତିଧ୍ୱନି ଉଚ୍ଚାରିତ ହେଉଥିଲା । ସମ୍ବର୍ଦ୍ଧନା ପରେ ରାମଚନ୍ଦ୍ରଦେବ ବର୍ମାଙ୍କୁ ରାଜନଅରକୁ ନିଆଗଲା । ଏଭଳି ସୁଯୋଗ୍ୟ ତଥା ସୁବିଖ୍ୟାତ ବ୍ୟକ୍ତିଙ୍କୁ ରାଜା ଭାବେ ପାଇଥିବା ଯୋଗୁଁ ଜୟପୁର ରାଜ୍ୟ ନିଜକୁ ଗୌରବାନ୍ୱିତ ମନେ କରୁଥିଲା । ସେହିଦିନ ମହେନ୍ଦ୍ରବେଳାରେ ବର୍ମା ମହୋଦୟଙ୍କ ଅଭିଷେକ ଅନୁଷ୍ଠିତ ହେଲା ।

ପରଦିନ ଜୁନ୍ ୬ ତାରିଖରେ ରାଜଦରବାର ଆୟୋଜିତ ହେଲା । ଶହ ଶହ ସଂଖ୍ୟାର ଜ୍ଞାନୀ, ଗୁଣୀ, ପଣ୍ଡିତ ଓ ଉଚ୍ଚପଦସ୍ଥ କର୍ମଚାରୀଙ୍କ ଗହଣରେ ମହାରାଜା ରାମଚନ୍ଦ୍ରଦେବ ବର୍ମା ନିଜ ଶାସନର ଆଭିମୁଖ୍ୟ ଘୋଷଣା କରିଥିଲେ । ସ୍ଥିତପ୍ରଜ୍ଞ, ଜ୍ଞାନବୃଦ୍ଧ, ତରୁଣତ ବୟସର ବିଚକ୍ଷଣଶୀଳ ନରପତି

ବର୍ମା ମହୋଦୟଙ୍କ ଦରବାର ସ୍ମରଣୀଭୂତ ହୋଇଥିଲା—ତାଙ୍କର ପ୍ରଥମ ଘୋଷଣା ଶୁଣି । ଶହ ଶହ ବର୍ଷ ଧରି ଚଳି ଆସିଥିବା ଭେଟି ବା ଦର୍ଶନୀ ଟିକସକୁ ସେ ପ୍ରଥମ ଘୋଷଣାରେ ଉଠାଇ ଦେଇଥିଲେ । ଏଥିପୂର୍ବେ ପ୍ରଜା-ମାନେ ନିଜର ଅଭାବ ଅସୁବିଧା ଜଣାଇବାପାଇଁ ଆସିଲେ ଭେଟି ସ୍ୱରୂପ କିଛି ଟଙ୍କା ରାଜକୋଷରେ ଜମାଦେବାକୁ ପଡୁଥିଲା । ବର୍ତ୍ତମାନ ଯେ କୌଣସି ସମୟରେ ଯେ କେହି ପ୍ରଜା ବିନା ଦର୍ଶନୀ ଟିକସରେ ରାଜାଙ୍କୁ ସାକ୍ଷାତ କରିପାରିବେ ବୋଲି ଘୋଷଣା ହୋଇଥିବା ଯୋଗୁଁ ସମଗ୍ର ରାଜ୍ୟରେ ଆନନ୍ଦ ଉଲ୍ଲାସ ଖେଳିଗଲା । ପ୍ରଜା କୌଣସି ଅସୁବିଧାରେ ପଡ଼ି ରାଜାଙ୍କୁ ଗୁହାରି କରିବାପାଇଁ ଆସିଲେ, ତା ଠାରୁ ଟିକସ ଆଦାୟ କରାଯିବା ଏକ ଅମାନୁଷିକ କାର୍ଯ୍ୟ ବୋଲି ମହାରାଜା କହିଥିଲେ ।

ଏଭଳି ମାନବବାଦୀ ମହାରାଜାଙ୍କୁ ପାଇ ଭାରତର ବୃହତ୍ତମ ଜମିଦାରୀ 'ଜୟପୁର' ଧନ୍ୟ ହେଲା । ଏ ଜମିଦାରୀର କ୍ଷେତ୍ରଫଳ ୧୪ ହଜାର ବର୍ଗ ମାଇଲ । ଜନସଂଖ୍ୟା ସେତେବେଳକୁ ଆଠ ଲକ୍ଷ । ବାର୍ଷିକ ରାଜସ୍ୱ ଆୟ ୬୨ ଲକ୍ଷ ଟଙ୍କା । ଏହା ବ୍ୟତୀତ ରାଜ୍ୟଟି ବନ ବନସମ୍ପଦରେ ଭରା । ଖଣିଜ ସମ୍ପଦ ବି ଭରି ରହିଥିବା ପୂର୍ବ ସର୍ବେକ୍ଷଣରୁ ଜଣାଯାଇଥିଲା । ସମୃଦ୍ଧ ଏହି ରାଜ୍ୟ ବର୍ତ୍ତମାନ ସୁଯୋଗ୍ୟ ମହାରାଜାଙ୍କ ଶାସନାଧୀନ ।

## ସଂସ୍କୃତିପୀଠ ରାଜନଅର

ଜୟପୁର ରାଜନଅର ପ୍ରାକୃତିକ ଓଡ଼ିଶାର ଏକ ମୁଖ୍ୟ ସାଂସ୍କୃତିକ କେନ୍ଦ୍ର ହୋଇ ଉଠିଲା । ମାନ୍ଦ୍ରାଜ ପ୍ରଦେଶର ଆନ୍ଧ୍ର ଭାଷାଭାଷୀ ଅଞ୍ଚଳ ଏବଂ ପ୍ରାକୃତିକ ଓଡ଼ିଶାର ସବୁ ବିଶିଷ୍ଟ ସାହିତ୍ୟିକଙ୍କ ସହିତ ବୀରମଦେବ ବର୍ମାଙ୍କର ସାଂସ୍କୃତିକ ସମ୍ପର୍କ ବହୁପୂର୍ବରୁ ରହିଥିଲା । ପୂର୍ବେ ବୀରମଦେବ ବର୍ମା ସାହିତ୍ୟ ରାଜ୍ୟର ରାଜା ଥିଲେ, ଏବେ ସେଥି ସହିତ ଜୟପୁର ରାଜ୍ୟର ମହାରଜା । ଲକ୍ଷ୍ମୀ ଓ ସରସ୍ୱତୀ ତାଙ୍କୁ ଦୁଇଟି ରାଜ୍ୟର ରାଜା ହେବା ଗୌରବର ଅଧିକାରୀ କରିଛନ୍ତି । ଅନ୍ୟାନ୍ୟ ସମସ୍ତ ସାଂସ୍କୃତିକ କାର୍ଯ୍ୟକ୍ରମ ସମେତ ଦେଶମିଶ୍ରଣ ଆନ୍ଦୋଳନ ମଧ୍ୟ ରାଜନଅରରୁ ନିୟନ୍ତ୍ରିତ ହେଲା ।

ଆନ୍ଧ୍ର-ଓଡ଼ିଶାର ସୀମା ନିର୍ଦ୍ଧାରଣ ସମ୍ପର୍କରେ ଅନୁଧ୍ୟାନ ସକାଶେ ଓଡ଼ନେଲ କମିଟି ଖ୍ରୀ: ୧୯୩୨ ରେ ଜୟପୁର ଅଞ୍ଚଳ ପରିଦର୍ଶନ କଲେ । ଏ କମିଟିର ଅଧ୍ୟକ୍ଷ ଥିଲେ ଏସ୍. ପି. ଓଡ଼ନେଲ । ସାଇମନ କମିଶନ ଗଠନ ବେଳେ କୌଣସି ଭାରତୀୟ ସଭ୍ୟ ନିଆଯାଇ ନଥିବାରୁ ଜାତୀୟ କଂଗ୍ରେସ ନେତାମାନେ କମିଶନକୁ ବିରୋଧ କରିଥିଲେ । ଏଣୁ ଓଡ଼ନେଲ କମିଟିରେ ଆସାମର ବିଶିଷ୍ଟ ଆଇନଜ୍ଞ ତରୁଣ ରାମ ଫୁକାନ ଓ ବମ୍ବେର ରାଜନୀତିଜ୍ଞ ଏଚ୍. ଏମ୍. ମେହେଟାଙ୍କୁ ଓଡ଼ନେଲ କମିଟି ସଭ୍ୟ ମନୋନୀତ କରାଯାଇଥିଲା । ଏ କମିଟି ସାକ୍ଷ୍ୟ ଗ୍ରହଣ କରୁଥିବାବେଳେ ଜୟପୁର ରାଜା ବିକ୍ରମଦେବ ବର୍ମା ନିଜ ଅଞ୍ଚଳର ଶହଶହ ଲୋକଙ୍କୁ ନେଇ କମିଟି ଆଗରେ ଓଡ଼ିଶା ସପକ୍ଷରେ ସାକ୍ଷ୍ୟ ଦେବା ବ୍ୟବସ୍ଥା କରିଥିଲେ । ନିଜେ ବର୍ମା ମହୋଦୟ ସାକ୍ଷ୍ୟ ପ୍ରଦାନ କରି ଜୟପୁର ଜମିଦାରୀ ଅଞ୍ଚଳରେ ଶତକଡ଼ା ୯୬ ଭାଗ ଓଡ଼ିଆ ଏବଂ ମାତ୍ର ୪ ଭାଗ ତେଲୁଗୁ ଭାଷାଭାଷୀ ବାସ କରୁଥିବା ରେକର୍ଡ଼ପତ୍ର ଦେଖାଇଥିଲେ । ସେ ସେହି ଅଞ୍ଚଳକୁ ପ୍ରସ୍ତାବିତ ଓଡ଼ିଶା ପ୍ରଦେଶ ସହିତ ମିଶ୍ରଣ ପାଇଁ ଦୃଢ଼ ଦାବୀ ଉପସ୍ଥାପନ କରିଥିଲେ ।

ବିକ୍ରମଦେବ ବର୍ମା ଜୟପୁର ରାଜ୍ୟର ରାଜା ହେବା ପରେ ବିଶାଖାପାଟଣାର ସାଂସ୍କୃତିକ ଧାରାରୁ ଏକପ୍ରକାର ବିଚ୍ଛିନ୍ନ ହୋଇ ପଡ଼ିଲେ । ଦୀର୍ଘ ୪୬ ବର୍ଷ ସେ ସେଠାରେ ଅବସ୍ଥାନ କରିଥିଲେ ଏବଂ ସେ ସହରର ସୁଖଦୁଃଖରେ ଭାଗୀଦାର ହୋଇଥିଲେ । ଓଡ଼ିଆ ସମାଜର ସଭାପତି ଭାବେ ଅନେକ କାର୍ଯ୍ୟ କରିବାକୁ ହେଉଥିଲା । ଏବେ ସେହି ସଭାପତିତ୍ୱ ତ୍ୟାଗ କରିବାକୁ ବାଧ୍ୟ ହେଲେ । କିନ୍ତୁ ସେ ଦାୟିତ୍ୱ ଗ୍ରହଣ କରିବା ପାଇଁ ନିଜର ସୁଯୋଗ୍ୟ ଜାମାତା କୁମାର ବିଦ୍ୟାଧର ସିଂହଦେବଙ୍କୁ ପରାମର୍ଶ ଦେଲେ । ତାହାହିଁ ହେଲା । ବିଶାଖାପାଟଣାର ଓକିଲ କୁମାର ବିଦ୍ୟାଧର ନିଜର ଇତିହାସ ଗବେଷଣା ଓ ଓକିଲାତି ସମେତ ଓଡ଼ିଆ ସମାଜର ସଭାପତିତ୍ୱ କାମ ସାଦରେ ଗ୍ରହଣ କରିଥିଲେ । କିନ୍ତୁ ସେ କ୍ରମେ ଜୟପୁରରେ ହିଁ ଅଧିକ ସମୟ ରହିଲେ ଏବଂ ସେଠାରୁ ଆସି ବିଶାଖାପାଟଣା ଓଡ଼ିଆ ସମାଜ କଥା ବୁଝୁଥିଲେ ।

ଜୟପୁର ରାଜଅନ୍ତଃପୁରରେ ଅବସ୍ଥାନ କରି କୁମାର ବିଦ୍ୟାଧର ସିଂହଦେବ ପ୍ରାୟ ପୂର୍ଣ୍ଣସମୟ ଇତିହାସ ଗବେଷଣାରେ ମନୋଯୋଗ କଲେ । ଏଥିପୂର୍ବେ ତାଙ୍କଦ୍ୱାରା ଲିଖିତ ତପୋବନ ରାଜ୍ୟ, ପୁରାତନ ଭଞ୍ଜବଂଶୀୟ ରାଜାଗଣ । ସିଂହଭୂମିର ପ୍ରାଚୀନତା ପ୍ରଭୃତି ଗବେଷଣାତ୍ମକ ପ୍ରବନ୍ଧର ପ୍ରକାଶନ ପରେ ସେ ଓଡ଼ିଶାର ଜଣେ ଖ୍ୟାତନାମା ଐତିହାସିକ ବିବେଚିତ ହୋଇଥିଲେ । ସେ ଲେଖିଥିବା 'Feudatory States of Orissa' ପ୍ରବନ୍ଧ ଖ୍ରୀ: ୧୯୩୦ ରେ କଲିକତାର ଇଂରାଜୀ ପତ୍ରିକା Modern Reveiw ରେ ପ୍ରକାଶନ ପରେ ତାଙ୍କର ଖ୍ୟାତି ଓଡ଼ିଶା ବାହାରକୁ ବ୍ୟାପିଥିଲା । ଅନ୍ୟ ଏକ ପ୍ରବନ୍ଧ 'ସିଂହଭୂମିର ଲୁପ୍ତ ରାଜ୍ୟ ପୋଡ଼ାହାଟ' ସେ ଲେଖିଥିଲେ—ଯାହାକି ଓଡ଼ିଆ ଆନ୍ଦୋଳନର କର୍ମକର୍ତ୍ତାମାନଙ୍କୁ ଦେଶମିଶ୍ରଣ କାର୍ଯ୍ୟରେ ସାହାଯ୍ୟ କରିଥିଲା । ଜୟପୁର ଅବସ୍ଥାନ କାଳରେ ସେ ଲେଖିଲେ, 'History of Nandapur' ଏବଂ 'Jeypur in Vizagpatnam' ଦୁଇଟି ଗ୍ରନ୍ଥ । ଏହା ବ୍ୟତୀତ ଜୟପୁର ଜମିଦାରୀ ଅଞ୍ଚଳକୁ ପ୍ରସ୍ତାବିତ ଓଡ଼ିଶା ପ୍ରଦେଶ ସହିତ ମିଶାଇବା ପାଇଁ ସେ ଐତିହାସିକ ତଥ୍ୟ ସମ୍ବଳିତ କେତେକ ସ୍ମାରକପତ୍ର ପ୍ରସ୍ତୁତ କରିଥିଲେ—ଯାହାକି ବ୍ରିଟିଶ କର୍ତ୍ତୃପକ୍ଷଙ୍କ ପାଖରେ ଉତ୍କଳ ସମ୍ମିଳନୀ ଦ୍ୱାରା ଉପସ୍ଥାପିତ ହୋଇଥିଲା ।

ରାଜା ବିକ୍ରମଦେବ ବର୍ମାଙ୍କ ନିୟମିତ ସାହିତ୍ୟ ସାଧନା ସମେତ କୁମାର ବିଦ୍ୟାଧର ସିଂହଦେବଙ୍କ ଇତିହାସ ଗବେଷଣା ଜୟପୁର ରାଜଅନ୍ତଃପୁରକୁ ଏକ ସାରସ୍ୱତ ପୀଠରେ ପରିଣତ କରିଥିଲା । ଏ ସମୟରେ ରାଜା ବିକ୍ରମଦେବ ବର୍ମା 'ବୁଦ୍ଧ ଚରିତ' ଏବଂ 'ଉତ୍କଳ କୁନ୍ଦମାଳା' ଗ୍ରନ୍ଥ ଦୁଇଟି ଓଡ଼ିଆରେ ଲେଖିଥିଲେ । ଓଡ଼ିଶା ଓ ଆନ୍ଧ୍ର ଅଞ୍ଚଳର ବହୁ କବି, ଲେଖକ, ଗବେଷକ ତଥା ସଂସ୍କୃତବିତ୍ ବିଭିନ୍ନ ସମୟରେ ଜୟପୁର ରାଜଅନ୍ତଃପୁରରେ ଆସି ପହଞ୍ଚୁଥିଲେ ।

ପଣ୍ଡିତ ନୀଳକଣ୍ଠ ଦାସ ଖ୍ରୀ: ୧୯୩୩ ରେ ଥରେ ଜୟପୁର ଆସି ରାଜା ବିକ୍ରମଦେବ ବର୍ମାଙ୍କୁ ସାକ୍ଷାତ କରିଥିଲେ । ବର୍ମା ମହୋଦୟ କିଛିବର୍ଷ ପୂର୍ବେ ବିଶାଖାପାଟଣାରୁ ଚିଠି ଲେଖି ପଣ୍ଡିତ ନୀଳକଣ୍ଠଙ୍କୁ ଏକ ଉଚ୍ଚମାନର

ସାହିତ୍ୟ ପତ୍ରିକା ସଂପାଦନ ତଥା ପ୍ରକାଶନ ପାଇଁ ଅନୁରୋଧ କରିଥିଲେ। ଅର୍ଥାଭାବ ଯୋଗୁଁ କିନ୍ତୁ ତାହା କାର୍ଯ୍ୟକାରୀ ହୋଇପାରି ନଥିଲା। ଏବେ ମହାରାଜା ବିକ୍ରମଦେବ ବର୍ମା ନଗଦ ତିନିହଜାର ଟଙ୍କା ଦେଲେ ଏବଂ ପତ୍ରିକା ପ୍ରକାଶନ ଆରମ୍ଭ ହେବା ପରେ ଆଉ ଦୁଇହଜାର ଟଙ୍କା ଦେବେ ବୋଲି ପ୍ରତିଶ୍ରୁତି ପ୍ରଦାନ କଲେ। ଏହି ଟଙ୍କାରେ ପଣ୍ଡିତ ନୀଳକଣ୍ଠ ଦାସ ପ୍ରେସ୍ ପ୍ରତିଷ୍ଠା କରି 'ନବ ଭାରତ' ମାସିକ ସାହିତ୍ୟ ପତ୍ରିକା ପ୍ରକାଶନ ଆରମ୍ଭ କରିଥିଲେ ଏବଂ ଏହା ପରେ ବର୍ମା ମହୋଦୟ ଅବଶିଷ୍ଟ ଦୁଇହଜାର ଟଙ୍କା ପଣ୍ଡିତ ନୀଳକଣ୍ଠଙ୍କୁ ଦେଲେ। ଏ ପତ୍ରିକା ଖ୍ରୀ: ୧୯୪୭ ଯାଏଁ ପ୍ରକାଶ ପାଉଥିଲା। ଅବଶେଷରେ ନୀଳକଣ୍ଠ ଦାସ ଏହାକୁ ଦୈନିକ 'ସମାଜ' ଅନୁଷ୍ଠାନ ସହିତ ସଂଯୋଗ କରି ଦେଇଥିଲେ। ସେହି ସ୍ୱନାମଧନ୍ୟ ସାହିତ୍ୟ ପତ୍ରିକାର ସ୍ମୃତିରେ ଏବେମଧ୍ୟ ପ୍ରତି ରବିବାର 'ସମାଜ'ର ସାହିତ୍ୟ ପତ୍ର 'ପଣ୍ଡିତ ନୀଳକଣ୍ଠ ଦାସଙ୍କ ନବ ଭାରତର ନୂତନ ପ୍ରସ୍ଥ' ନାମରେ ପ୍ରକାଶ ପାଉଛି।

ବିକ୍ରମଦେବ ବର୍ମା ଖ୍ରୀ: ୧୯୩୩ରେ 'ଆନ୍ଧ୍ର ଭାରତୀ ତୀର୍ଥ' ଗବେଷଣା ବିଶ୍ୱବିଦ୍ୟାଳୟ କୁଳପତି ମନୋନୀତ ହେଲେ। ଏହି ପଦବୀ ସେତେବେଳେ ସମଗ୍ର ଦେଶରେ ଥିଲା ବହୁ ଉଚ୍ଚ ସମ୍ମାନର ପ୍ରତୀକ। ବିଶାଖାପାଟଣାଠାରେ ଅବସ୍ଥିତ ଏହି ପ୍ରତିଷ୍ଠାନର କାର୍ଯ୍ୟକାରୀ ପରିସୀମା ସମଗ୍ର ବିଶ୍ୱକୁ ବ୍ୟାପୀ ଯାଇଥିଲା। ଅନୁଷ୍ଠାନର କର୍ମକର୍ତ୍ତା ଥିଲେ ଆନ୍ଧ୍ର, ଉତ୍କଳୀ, ହିନ୍ଦୁସ୍ଥାନୀ, ଇଂରେଜ, ଜର୍ମାନୀ, ଇଟାଲୀ ପ୍ରଭୃତି ଭାଷାର ପଣ୍ଡିତ। ପ୍ରତିବର୍ଷ ଏହି ସଂସ୍ଥା ନିଷ୍ଠରୁ ପରୀକ୍ଷା ନିରୀକ୍ଷା ପରେ ବିଭିନ୍ନ ଭାଷାର ଉପଯୁକ୍ତ ବ୍ୟକ୍ତିଙ୍କୁ ସମ୍ମାନ ଓ ଉପାଧି ପ୍ରଦାନ କରାଯାଉଥିଲା। ବର୍ମା ମହୋଦୟ ଏହି 'ଆନ୍ଧ୍ର ଭାରତୀ ତୀର୍ଥ'ର କୁଳପତି ଆସନ ଅଳଂକୃତ କରିବା ଯୋଗୁଁ ଅନୁଷ୍ଠାନର ସମ୍ମାନ ବୃଦ୍ଧି ପାଇଥିଲା। ଜୟପୁର ରାଜନଅର ସମଗ୍ର ଦେଶର ଦୃଷ୍ଟି ଆକର୍ଷଣ କରିଥିଲା।

ରାଜନଅରରେ ସୌହାର୍ଦ୍ଦ୍ୟପୂର୍ଣ୍ଣ ବାତାବରଣ ଭରି ରହିଥିଲା। ରାଜ୍ୟର ପୂର୍ବତନ ରାଣୀ ତଥା ନିଜ ପୂର୍ବସୁରୀ ରାମଚନ୍ଦ୍ର ଦେବ (୪ର୍ଥ)ଙ୍କ ବିଧବା ପତ୍ନୀ ନଅର ଭିତରେ ହିଁ ରହୁଥିଲେ। ବିକ୍ରମଦେବ ବର୍ମା ତାଙ୍କୁ

ବାର୍ଷିକ ଏକଲକ୍ଷ ଟଙ୍କା ଭତ୍ତା ମଂଜୁର କରିଥିଲେ । ଆଧ୍ୟାତ୍ମିକ ଓ ଧାର୍ମିକ ବାତାବରଣ ନଅର ପରିସରକୁ ପବିତ୍ର କରି ଦେଇଥିଲା । ମହାରାଜା ବୀରମ ଦେବ ବର୍ମା ପ୍ରତ୍ୟହ ବହୁ ସମୟ ପୂଜା ଅର୍ଚ୍ଚନା କରୁଥିଲେ । ରାଜ୍ୟର ସମସ୍ତ ଦେବଦେବୀ ମନ୍ଦିର ସୁପରିଚାଳନା ପାଇଁ ଅଧିକ ଧ୍ୟାନ ଦେଉଥିଲେ । ଦୈନନ୍ଦିନ କାର୍ଯ୍ୟପାଇଁ ନିର୍ଦ୍ଧାରିତ ଖର୍ଚ୍ଚ ବ୍ୟତୀତ ସେସବୁ ଧର୍ମାନୁଷ୍ଠାନର ଉନ୍ନୟନ କାର୍ଯ୍ୟପାଇଁ ବାର୍ଷିକ ଏକଲକ୍ଷ ଟଙ୍କା ସ୍ଥାୟୀ ଅନୁଦାନ ରାଜକୋଷରୁ ମଂଜୁର କରିଥିଲେ ।

ରାଜଦରବାର ମନେ ହେଉଥିଲା—ସତେ ଯେମିତି ପଣ୍ଡିତ ସଭା । ବହୁ ଜ୍ଞାନୀ ଗୁଣୀ ଶାସ୍ତ୍ରଜ୍ଞ ଏଠାରେ ଉପସ୍ଥିତ ହେଉଥିଲେ । ଶାସ୍ତ୍ରମତେ ସବୁ କାମ ସମାପନ ହେଉଥିଲା । ରାଜା ଯେମିତି ନ୍ୟାୟନିଷ୍ଠ, ରାଣୀ ହୀରାଦେବୀ ସେମିତି ଧର୍ମପରାୟଣା ଥିଲେ । ସେ ଅନେକ ଘାତ ପ୍ରତିଘାତ ତଥା ଅଭାବ ଅନଟନ ମଧ୍ୟରେ ଜୀବନର ଅଧିକାଂଶ ସମୟ ବିତାଇ ଆସିଥିବା ଯୋଗୁ ଅନ୍ୟର ଦୁଃଖ ଦୁର୍ଦ୍ଦଶା ପ୍ରତିକାର କରିବାରେ ସିଦ୍ଧହସ୍ତା ହୋଇ ପାରିଥିଲେ । ଏ ସମୟରେ ଜୟପୁର ଏକ ରାମରାଜ୍ୟ ମନେ ହେଉଥିଲା ।

## ସାହିତ୍ୟସମ୍ରାଟ—ବିଦ୍ୟାବାରିଧି

ଆନ୍ଧ୍ର ଭାରତୀ ତୀର୍ଥର କୁଳପତି ଭାବେ ବୀରମଦେବ ବର୍ମାଙ୍କ କାର୍ଯ୍ୟକାଳ ସରିବା ପରେ ସେହି ସଂସ୍ଥା ଖ୍ରୀ: ୧୯୩୩ ମଧ୍ୟଭାଗରେ ବର୍ମା ମହୋଦୟଙ୍କୁ 'ସାହିତ୍ୟ ସମ୍ରାଟ' ଉପାଧିରେ ଭୂଷିତ କରିଥିଲେ । ଏଥିପାଇଁ ସେତେବେଳେ ସମଗ୍ର ଓଡ଼ିଶା ଏବଂ ଆନ୍ଧ୍ର ଭାଷାଭାଷୀ ଅଞ୍ଚଳରେ ଆନନ୍ଦ ପ୍ରକାଶ ପାଇଥିଲା ଓ ଉପଯୁକ୍ତ ପାତ୍ରରେ ଉପଯୁକ୍ତ ସମ୍ମାନ ପ୍ରଦାନ କରା ଯାଇଛି ବୋଲି ପତ୍ରପତ୍ରିକାରେ ମତ ପ୍ରକାଶ ପାଇଥିଲା । ଭାରତୀ ତୀର୍ଥ ପକ୍ଷରୁ ଦିଆଯାଇଥିବା ପ୍ରମାଣପତ୍ରରେ ଲେଖା ଯାଇଥିଲା:—

"The Andhra Bharati Tirth Research University is pleased to grant this diploma of Lord of letters 'Sahitya

Samrat' homatis cause in the faculty of Sahitya to Raja Shri Shri Shri Vikram Dev Varma Maharaja of Jeypur as a mark of recognition by this University corporation of duly attested attainment in Sanskrit, Telugu, Oriya and Hindi literature and distinguished services to this University as Kulapati (Chancellor) in promotion of our ideals, educational and cultural programmes and research.

Given under our hands and the seal of the University this day the sixth of the month of May 1933."

ଏ ଉପାଧି ପାଇବା ପରେ ସମଗ୍ର ଓଡ଼ିଶା ଓ ଆନ୍ଧ୍ର ଅଞ୍ଚଳର ବହୁ ବିଶିଷ୍ଟ ବ୍ୟକ୍ତିଙ୍କ ପକ୍ଷରୁ ମହାରାଜା ବିକ୍ରମଦେବ ବର୍ମାଙ୍କ ପାଖକୁ ଶୁଭେଚ୍ଛା ବାର୍ତ୍ତାମାନ ଆସି ପହଞ୍ଚିଥିଲା ।

ମାନ୍ଦ୍ରାଜ ବିଶ୍ୱବିଦ୍ୟାଳୟର ଆନ୍ଧ୍ର ଭାଷାଭାଷୀ ଅଞ୍ଚଳକୁ କାର୍ଯ୍ୟକାରୀ ପରିସୀମା ଭାବେ ନେଇ ଆନ୍ଧ୍ର ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ହେଲା । ଏ ବିଶ୍ୱବିଦ୍ୟାଳୟ ପ୍ରଥମେ ବିଜୟୱାଡ଼ାଠାରେ ସ୍ଥାପିତ ହୋଇଥିଲେ ମଧ୍ୟ ମାତ୍ର ଦୁଇବର୍ଷ ପରେ ୱାଲଟିଅରକୁ ସ୍ଥାନାନ୍ତରିତ ହୋଇଥିଲା । ମାନ୍ଦ୍ରାଜ ବିଶ୍ୱବିଦ୍ୟାଳୟର ଦର୍ଶନ ବିଭାଗ ପ୍ରଫେସର ଡକ୍ଟର ସର୍ବପଲ୍ଲୀ ରାଧାକୃଷ୍ଣନ ଏହି ନୂତନ ବିଶ୍ୱବିଦ୍ୟାଳୟର କୁଳପତି ନିଯୁକ୍ତ ହୋଇ ୱାଲଟିଅର ଆସିଲେ । ସେଠାକୁ ଆସିବାର ମାତ୍ର ୧୫ ଦିନ ମଧ୍ୟରେ କୁଳପତି ରାଧାକୃଷ୍ଣନ ଜୟପୁର ମହାରାଜା ବିକ୍ରମଦେବ ବର୍ମାଙ୍କ ସହିତ ସାକ୍ଷାତ କରି ବିଶ୍ୱବିଦ୍ୟାଳୟ ସମ୍ପର୍କରେ ବିଭିନ୍ନ ଆଲୋଚନା କରିଥିଲେ । ଡକ୍ଟର ରାଧାକୃଷ୍ଣନ ଏହି ନୂତନ ବିଶ୍ୱବିଦ୍ୟାଳୟକୁ ଭାରତର ବହୁ ଖ୍ୟାତନାମ ଶିକ୍ଷାବିତ୍‌ଙ୍କୁ ପ୍ରଫେସର ଭାବେ ନିଯୁକ୍ତ କରିବାରେ ସକ୍ଷମ ହୋଇଥିଲେ । ଏମାନଙ୍କ ମଧ୍ୟରେ ହୁମାୟୁନ କବୀର, ହୀରେନ ମୁଖାର୍ଜୀ, ଭି. କେ. କୃଷ୍ଣମେନନ, ଜନ୍ ମାଥାଇ ପ୍ରମୁଖ ଅନ୍ତର୍ଭୁକ୍ତ ଥିଲେ । ଏମାନଙ୍କ ବ୍ୟତୀତ କୁଳପତି ରାଧାକୃଷ୍ଣନ ସାର୍ ଏମ୍. ବିଶ୍ୱେଶ୍ୱରାୟା ଏବଂ ସାର୍ ସି. ଭି. ରମଣଙ୍କୁ ଯଥାକ୍ରମେ ବୈଷୟିକ ଓ

ପଦାର୍ଥ ବିଜ୍ଞାନ ବିଭାଗର ପରିଦର୍ଶକ ପ୍ରାଧ୍ୟାପକ (Visiting Professor) ନିଯୁକ୍ତ କରି ଯାଇଥିଲେ । ବିଂଶ ଶତାବ୍ଦୀ ଚତୁର୍ଥ ଦଶକର ଏହି ଶିକ୍ଷକ ଗୋଷ୍ଠୀ ସପ୍ତମ ଦଶକବେଳକୁ ଭାରତର ଭାଗ୍ୟ ନିୟନ୍ତା ହୋଇ ପଡ଼ିଥିଲେ । ନିଜେ ଡ଼କ୍ଟର ରାଧାକୃଷ୍ଣନ ରାଷ୍ଟ୍ରପତି, ହୁମାୟୁନ କବୀର, କୃଷ୍ଣମେନନ କେନ୍ଦ୍ରମନ୍ତ୍ରୀ ଓ ମାଥାଇ ମହାଶୟ ପ୍ରଧାନମନ୍ତ୍ରୀ ଜବାହରଲାଲ ନେହରୁଙ୍କ ସଚିବ ନିଯୁକ୍ତ ହୋଇଥିଲେ । ସେହିଭଳି ହୀରେନ ମୁଖାର୍ଜୀ ବାମପନ୍ଥୀ ସଭ୍ୟ ଭାବେ ଭାରତ ଲୋକସଭାରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ । ରମଣ ମହର୍ଷି ପଦାର୍ଥ ବିଜ୍ଞାନରେ ନୋବେଲ ପୁରସ୍କାର ପାଇଲେ ଏବଂ ସାର ବିଶ୍ୱେଶ୍ୱରାୟା ବିନ୍ୟାନିୟନ୍ତ୍ରଣ ତଥା ନଦୀବନ୍ଧ ନିର୍ମାଣରେ ବିଶ୍ୱବିଖ୍ୟାତ ହୋଇ ପଡ଼ିଥିଲେ । ଏହି ପ୍ରଖ୍ୟାତ ବୁଦ୍ଧିଜୀବୀ ଗୋଷ୍ଠୀ ବହୁ ବିଚାର ବିମର୍ଷ ପରେ ଖ୍ରୀ : ୧୯୩୪ରେ ଜୟପୁର ମହାରାଜା ବିକ୍ରମଦେବ ବର୍ମାଙ୍କୁ ଆନ୍ଧ୍ର ବିଶ୍ୱବିଦ୍ୟାଳୟ ପକ୍ଷରୁ ସମ୍ମାନସୂଚକ ଡି. ଲିଟ୍. (ବିଦ୍ୟାବାରିଧି) ଉପାଧି ଦେବା ପାଇଁ ସ୍ଥିର କରିଥିଲେ ।

ଏହି ନିଷ୍ପତ୍ତି କାର୍ଯ୍ୟକାରୀ ହେଲା ଏବଂ ଏକ ସ୍ୱତନ୍ତ୍ର ସମାବର୍ତ୍ତନ ଉତ୍ସବରେ ବର୍ମା ମହୋଦୟଙ୍କୁ କୁଳପତି ରାଧାକୃଷ୍ଣନ ଡ଼କ୍ଟରେଟ ପ୍ରଦାନ କରିଥିଲେ । କେବଳ ଏତିକି ନୁହେଁ; ରାଧାକୃଷ୍ଣନ ମହୋଦୟ ବିକ୍ରମଦେବ ବର୍ମାଙ୍କୁ ତେଲୁଗୁ ସାହିତ୍ୟର ପାଠ୍ୟକ୍ରମ ନିର୍ଦ୍ଧାରଣ କମିଟିର ସଭ୍ୟ ଓ ବିଶ୍ୱବିଦ୍ୟାଳୟ ସିଣ୍ଡିକେଟକୁ ସ୍ୱତନ୍ତ୍ର ସଭ୍ୟଭାବେ ମଧ୍ୟ ନିମନ୍ତ୍ରଣ କରିଥିଲେ । ଏହାଦେଖି ସେତେବେଳେ ବୁଦ୍ଧିଜୀବୀ ମହଲରେ 'ଗୁଣ ଚିହ୍ନେ ଗୁଣିଆ' ବୋଲି ପରସ୍ପର ଆଲୋଚନା ହୋଇଥିଲା ଓ ପତ୍ରପତ୍ରିକାରେ ପ୍ରକାଶ ପାଇଥିଲା ।

## ଭାଷାକୋଷ ପ୍ରକାଶନରେ ସହାୟତା

ପୂର୍ଣ୍ଣଚନ୍ଦ୍ର ଭାଷାକୋଷ ଓଡ଼ିଆରେ ସବୁଠାରୁ ବଡ଼ ଗ୍ରନ୍ଥ । ଏହା ବିରାଟ-କାୟ ସାତଟି ଭାଗରେ ପ୍ରକାଶିତ । ସଙ୍କଳକ ଗୋପାଳଚନ୍ଦ୍ର ପ୍ରହରାଜ ଏହି ଭାଷାକୋଷ କାମରେ ନିଜର ସମସ୍ତ ଅସ୍ଥାବର ଓ ସ୍ଥାବର ସମ୍ପତ୍ତି ବିନିଯୋଗ କରି ଦେଇଥିଲେ । ତାହା ମଧ୍ୟ ଏକାର୍ଯ୍ୟ ପାଇଁ ଯଥେଷ୍ଟ ନଥିଲା ।

ଏଣୁ ରାଜାମହାରାଜା ଓ ବଦାନ୍ୟ ବ୍ୟକ୍ତିଙ୍କ ସାହାଯ୍ୟ ଉପରେ ନିର୍ଭର କରିଥିଲେ । ମୟୂରଭଞ୍ଜ ମହାରାଜା ପୂର୍ଣ୍ଣଚନ୍ଦ୍ର ଭଞ୍ଜଦେଓ ଏଥିପାଇଁ ସର୍ବାଧିକ ସାହାଯ୍ୟ ଦେଇଥିବା ଯୋଗୁଁ ତାଙ୍କ ନାମରେ ଏହା 'ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ' ନାମିତ କରାଯାଇଛି ।

ଏହି ଗ୍ରନ୍ଥର ବିଭିନ୍ନ ଭାଗ ଭିନ୍ନ ଭିନ୍ନ ବିଶିଷ୍ଟ ବ୍ୟକ୍ତିଙ୍କୁ ଉତ୍ସର୍ଗ କରାଯାଇଛି । ଏହି କ୍ରମରେ ସଙ୍କଳକ ଗୋପାଳଚନ୍ଦ୍ର ପ୍ରହରାଜ ଭାଷାକୋଷର ଚତୁର୍ଥ ଭାଗ ସାହିତ୍ୟସମ୍ରାଟ ବିକ୍ରମଦେବ ବର୍ମାଙ୍କୁ ଉତ୍ସର୍ଗ କରିଛନ୍ତି । କଟକ ଠାରୁ ଖ୍ରୀ. ୧୯୩୪ ଜୁନ୍ ମାସରେ ପ୍ରକାଶିତ ଏହି ଭାଗର ଉତ୍ସର୍ଗ ପତ୍ରରେ ସଙ୍କଳକ ଲେଖିଛନ୍ତି:—

"The fourth of the Purna Chandra Oriya Vasakosa dedicated with kind permission to Sahitya Samrat Raja Sri Sri Sri Vikram Dev Varma, Raja Saheba, Jeypur Estate, District Vizag who is rightly looked upon as the Vikramaditya of Utkal, whose burning patriotism has impelled him to deviate himself to life long service in the cause of the Oriya nation with a rare tenacity of purpose, who has during the last forty years identified himself with the movement for the unification of the Oriya speaking tracts, whose catholic unificance in the cause of education and for the all round progress of the Oriya nation has made him the pride and glory of ten millions of Oriyas, who is himself a great poet and author of renown and who has been a staunch and active supporter of this lexicon."

ଭାଷାକୋଷ ଚତୁର୍ଥ ଖଣ୍ଡ ପ୍ରକାଶନ ପରେ ପଞ୍ଚମ ଖଣ୍ଡ ପାଇଁ ମହାରାଜା ବିକ୍ରମଦେବ ବର୍ମା ଦଶ ହଜାର ଟଙ୍କା ଆର୍ଥିକ ସାହାଯ୍ୟ ଦେଇଥିଲେ । ଦୁଇ କିସ୍ତିରେ ପ୍ରଥମେ ଛଅ ହଜାର ଓ ପରେ ଚାରି ହଜାର ଟଙ୍କା ଠିକ୍

ଆବଶ୍ୟକ ମୁଦ୍ରାବଳି ଦେଇଥିବା ଯୋଗୁଁ ଏଥିପାଇଁ ସଙ୍କଳକ ଗୋପାଳଚନ୍ଦ୍ର ପ୍ରହରାଜ ମହାରାଜା ବିକ୍ରମଦେବ ବର୍ମାଙ୍କ ନିକଟରେ କୃତଜ୍ଞତା ପ୍ରକାଶ କରିଥିଲେ । ଅନ୍ୟାନ୍ୟ ରାଜା ମହାରାଜାମାନେ ନିଜର ବଦାନ୍ୟତା ପରିପ୍ରକାଶ ତଥା ଏଭଳି ଐତିହାସିକ ସଂକଳନରେ ନିଜର ନାମ ସନ୍ନିବିଷ୍ଟ ରଖିବା ପାଇଁ ଅର୍ଥସାହାଯ୍ୟ ଦେଇଥିଲେ । ବିକ୍ରମଦେବ ବର୍ମା କିନ୍ତୁ ନିଜେ ଜଣେ ସାହିତ୍ୟିକ ତଥା ଭାଷାବିତ୍ ହୋଇଥିବା ଯୋଗୁଁ ତାଙ୍କଠାରେ ଏଥିପାଇଁ ସ୍ୱତନ୍ତ୍ର ମାନସିକତା ରହିଥିଲା ।

## ଆନ୍ଧ୍ର ବିଶ୍ୱବିଦ୍ୟାଳୟକୁ ଅନୁଦାନ

ନୂତନ ଭାବେ ପ୍ରତିଷ୍ଠିତ ଆନ୍ଧ୍ର ବିଶ୍ୱବିଦ୍ୟାଳୟ ଆର୍ଥିକ ଅନଟନ ମଧ୍ୟରେ ଗତିଥିଲା । କିନ୍ତୁ ଭାରତ ବିଖ୍ୟାତ ଶିକ୍ଷାବିତ୍‌ମାନେ ଏଠାରେ ଅଧ୍ୟାପକ ଭାବେ ଅବସ୍ଥାପିତ ହୋଇଥିବା ଯୋଗୁଁ ମାତ୍ର ଦୁଇତିନି ବର୍ଷ ମଧ୍ୟରେ ସମଗ୍ର ଦେଶରେ ଏହି ବିଶ୍ୱବିଦ୍ୟାଳୟ ସୁନାମ ଅର୍ଜନ କରି ପାରିଥିଲା । କୁଳପତି ଡକ୍‌ଟର ଏସ୍ ରାଧାକୃଷ୍ଣନ ଜୟପୁର ମହାରାଜା ବିକ୍ରମଦେବ ବର୍ମାଙ୍କ ସହିତ ଯୋଗାଯୋଗ ରଖିଥିଲେ ଏବଂ ସାହାଯ୍ୟ ନିବେଦନ କରିଥିଲେ । ବର୍ମା ମହୋଦୟ ବିଶ୍ୱବିଦ୍ୟାଳୟକୁ ବାର୍ଷିକ ଏକଲକ୍ଷ ଟଙ୍କା ଅନୁଦାନ ଦେବା ପାଇଁ ପ୍ରତିଶ୍ରୁତି ପ୍ରଦାନ କରି ନିଜ ରାଜକୋଷରୁ ଏକ ସ୍ୱତନ୍ତ୍ର ପାଣ୍ଠି ପ୍ରସ୍ତୁତ କରିଥିଲେ । କିନ୍ତୁ ଜୟପୁର ରାଜ୍ୟ ସେତେବେଳେ ଯାଏଁ ମାନ୍ଦ୍ରାଜ ପ୍ରଦେଶ ଅନ୍ତର୍ଭୁକ୍ତ ଥିବା ଯୋଗୁଁ ସେଠାକାର ଗଭର୍ଣ୍ଣରଙ୍କ ବିନାନୁମତିରେ ଟଙ୍କା ଦେଇପାରି ନଥିଲେ । ପୁଣି ଆନ୍ଧ୍ର ବିଶ୍ୱବିଦ୍ୟାଳୟ ମଧ୍ୟ ସରକାରଙ୍କ ଅନୁମୋଦନ ବ୍ୟତୀତ ଅନୁଦାନ ଗ୍ରହଣ କରିବା ସମ୍ଭବ ନଥିଲା ।

ସେତେବେଳେ ବବିଲି ରାଜା ଶ୍ୱେତଚଳପତି ରାମକୃଷ୍ଣ ରଙ୍ଗାରାଓ ମାନ୍ଦ୍ରାଜ ପ୍ରଦେଶର ପ୍ରଧାନମନ୍ତ୍ରୀ ଥିଲେ । ସେ କୁଳପତି ଡ଼କ୍‌ଟର ରାଧାକୃଷ୍ଣନଙ୍କ ବନ୍ଧୁ ହୋଇଥିବା ଯୋଗୁଁ ତାଙ୍କର ଜରିଆରେ ବିଶ୍ୱ-ବିଦ୍ୟାଳୟ ପାଇଁ ଅନୁଦାନ ସଂଗ୍ରହ କରିବା ଅନୁମତି ଓ ଜୟପୁର ମହାରାଜାଙ୍କ

ଅର୍ଥଦାନ ପାଇଁ ମଂଜୁରୀ ମାଦ୍ରାଜ ଗଭର୍ଣ୍ଣରଙ୍କଠାରୁ ଖ୍ରୀ : ୧୯୩୪ରେ ମିଳିଥିଲା ।

ପ୍ରତିବର୍ଷ ଏକଲକ୍ଷ ଟଙ୍କା ଅନୁଦାନ ଅବ୍ୟାହତ ରହିଲା । ମହାରାଜା ବୀରମିତ୍ରୋଦୟ ବର୍ମା ଏହି ସୂତ୍ରରେ ପ୍ରାପ୍ତ ୨୦ ଲକ୍ଷ ଟଙ୍କା ଆନ୍ଧ୍ର ବିଶ୍ୱ-ବିଦ୍ୟାଳୟକୁ ଦେଇଥିଲେ । ବିଶ୍ୱବିଦ୍ୟାଳୟ ସ୍ୱଚ୍ଛଳରେ ଚାଲିଲା । କର୍ତ୍ତୃପକ୍ଷ ଏଥିପାଇଁ ମହାରାଜାଙ୍କ ପାଖରେ କୃତଜ୍ଞ ରହିଥିଲେ ଏବଂ ତାଙ୍କର ନାମରେ ବିଶ୍ୱବିଦ୍ୟାଳୟ କେନ୍ଦ୍ରୀୟ ଗ୍ରନ୍ଥାଗାରକୁ 'ବୀରମିତ୍ରୋଦୟ ଲାଇବ୍ରେରୀ' ନାମିତ କଲେ । ଏହି ଗ୍ରନ୍ଥାଗାର ବର୍ତ୍ତମାନ ଭାରତର ବୃହତ୍ତମ ଲାଇବ୍ରେରୀମାନଙ୍କ ମଧ୍ୟରେ ଅନ୍ୟତମ ।

## ଜୟପୁର ଓଡ଼ିଶାର ଅନ୍ତର୍ଭୁକ୍ତି

ବିଶାଖାପାଟଣାରେ ଓଡ଼ିଆ ସମାଜ ଗଠନ ବେଳରୁ ଆରମ୍ଭ କରି ଦୀର୍ଘ ୪୦ ବର୍ଷ ବୀରମିତ୍ରୋଦୟ ବର୍ମା ଦେଶମିଶ୍ରଣ କାର୍ଯ୍ୟରେ ନିଜକୁ ନିୟୋଜିତ କରିଥିଲେ । ଉତ୍କଳ ସମ୍ମିଳନୀ ଅଧିବେଶନଗୁଡ଼ିକରେ ବିଭିନ୍ନ ପ୍ରସ୍ତାବ ଓ ପରାମର୍ଶ ଦେବା ସଙ୍ଗେ ସଙ୍ଗେ ଏ ସଂପର୍କରେ ସେ କେତେକ ନିବନ୍ଧ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶ କରିଥିଲେ ଏବଂ ମୁଦ୍ରିତ ପୁସ୍ତିକା ବିତରଣ କରି ଜନମତ ସୃଷ୍ଟି କରିପାରିଥିଲେ । ଓଡ଼ିଶା ପ୍ରଦେଶ ଗଠନ ହେବା ନିଷ୍ପତ୍ତି ଇଂଲଣ୍ଡର ଗୋଲଟେବୁଲ ବୈଠକରେ ଘୋଷିତ ହେବା ପରେ ସୀମା ନିର୍ଦ୍ଧାରଣ ପାଇଁ ଯେତେ ସବୁ କମିଟି କମିଶନ ଗଠିତ ହୋଇଥିଲା, ସେସବୁରେ ବର୍ମା ମହୋଦୟ ସାକ୍ଷ୍ୟ ପ୍ରଦାନ କରି ଜୟପୁର ଜମିଦାରୀ ଅଞ୍ଚଳକୁ ଓଡ଼ିଶା ସହିତ ମିଶାଇବା ସକାଶେ ଦୃଢ଼ଦାବୀ ଉପସ୍ଥାପନ କରିଥିଲେ । କିନ୍ତୁ ଖ୍ରୀ : ୧୯୩୩ ମାର୍ଚ୍ଚ ୧୭ ତାରିଖରେ ଓଡ଼ିଶାର ସୀମା ସଂପର୍କରେ ସରକାରଙ୍କ ଯେଉଁ ଶ୍ୱେତପତ୍ର ପ୍ରକାଶ ପାଇଲା ସେଥିରେ ଜୟପୁର ଓଡ଼ିଶାର ଅନ୍ତର୍ଭୁକ୍ତ ନଥିଲା । ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତି ପୁଣିଥରେ ଇଂଲଣ୍ଡ ଯାଇ ଜଏଣ୍ଟ ପାର୍ଲାମେଣ୍ଟାରୀ କମିଟି ଆଗରେ ସାକ୍ଷ୍ୟ ଦେଲେ ଏବଂ ସେ ପାରଳାଖେମୁଣ୍ଡି ଓ ଜୟପୁରକୁ ଓଡ଼ିଶାରେ ମିଶାଇବା

ପାଇଁ ସକ୍ଷମ ହେଲେ । ଜୟପୁର ଓଡ଼ିଶାର ଅନ୍ତର୍ଭୁକ୍ତ ହେବା ଘୋଷଣା ବ୍ରିଟିଶ ସରକାରଙ୍କ ଦ୍ୱାରା ଖ୍ରୀ : ୧୯୩୪ ନଭେମ୍ବର ୨୨ ତାରିଖରେ ପ୍ରକାଶ ପାଇଲା । ଏଥିରେ ବୀରମଦେବ ବର୍ମା ଅତ୍ୟନ୍ତ ଆନନ୍ଦିତ ହୋଇଥିଲେ ଓ ସମଗ୍ର ଓଡ଼ିଶାରେ ଅସୀମ ଆନନ୍ଦ ପ୍ରକାଶ ପାଇଥିଲା । ଏହିକବେଳେ ମହାରାଜା ବୀରମଦେବ ବର୍ମାଙ୍କୁ ଅଭିନନ୍ଦନ ଜଣାଇ ଖ୍ରୀ : ୧୯୩୪ ନଭେମ୍ବର ୨୪ ତାରିଖରେ କଟକରୁ ଗୋପାଳଚନ୍ଦ୍ର ପ୍ରହରାଜ ଏକ ଚିଠିରେ ଲେଖିଥିଲେ—

"ଆମେ ଜୟପୁରକୁ, ତହିଁ ସଙ୍ଗେ ସଙ୍ଗେ ବୀରମଦେବ ବର୍ମାଙ୍କୁ ପାଇଲୁ । ଏହି ସମ୍ବାଦରେ ପ୍ରତ୍ୟେକ ଓଡ଼ିଆ ପୁଅର ମନ କୁଣ୍ଢେମୋଟ ହୋଇଯାଇଛି । ବର୍ଷକ ପୂର୍ବେ ଗୋଟିଏ ଉଡ଼ା ଖବର ଶୁଣି ମୁଁ ଜୟପୁର ଓଡ଼ିଶାରେ ମିଶିବା ଯୋଗୁଁ ଆନନ୍ଦ ପ୍ରକାଶ କରି ଆପଣଙ୍କ ପାଖକୁ ଟେଲିଗ୍ରାମ ଦେଇଥିଲି । ପରେ ଏ ଖବର ମୂଳରେ ସରକାରୀ ନିଦର୍ଶନ ନ ଥିବାର ଜାଣି ବ୍ୟଥିତ ହୋଇଥିଲି, ପ୍ରଭୁଙ୍କ କୃପାରୁ ମୋର ବର୍ଷକ ପୂର୍ବ ଟେଲିଗ୍ରାମର ଶୁଭବାଚନ ଆଜ ସଫଳ ହେଲା । ଈଶ୍ୱର କୋଟିଏ ଓଡ଼ିଆଙ୍କ ଗୁହାରି ଶୁଣିଲେ ଓ ଜୟପୁରବାସୀ ଦଶଲକ୍ଷ ଓଡ଼ିଆଙ୍କ ପ୍ରାଣ ରଖିଲେ । ବୀରମଦେବ ବର୍ମା ଜୟପୁର ଗାଦିରେ ବସି ନଥିଲେ ଜୟପୁର ଓଡ଼ିଶାରେ ମିଶିବା କଥା କେବଳ କଥାରେହିଁ ରହିଯାଇ ଥାଆନ୍ତା । ଆଜ ଓଡ଼ିଶା ପ୍ରଦେଶରେ ରାଜା ମହାରାଜାଙ୍କ ମଉଡ଼ମଣି ରୂପେ ଉତ୍କଳର ବୀରମାଦିତ୍ୟ— ବୀରମଦେବ ବର୍ମା ବିରାଜିବେ । ବହୁତରୁ ପାରଳା ରାଜାସାହେବ ତୁମ୍ଭଙ୍କ ଠାକୁ ଯେଉଁ ଆଶ୍ୱାସନା ବାଣୀ ଲେଖିଥିଲେ; ତାହାହିଁ ସଫଳ ହେଲା ।"

ଏହା ବ୍ୟତୀତ ବିଭିନ୍ନ ସ୍ଥାନରୁ ପଣ୍ଡିତ ନୀଳକଣ୍ଠ ଦାସ, ପଣ୍ଡିତ ଗୋଦାବରୀଶ ମିଶ୍ର, ପଣ୍ଡିତ କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ, ଶ୍ରୀକୃଷ୍ଣ ମହାପାତ୍ର, ମଦନ ମୋହନ ରଥ, ଅନନ୍ତରାମ ରଥ, ଗୋକୁଳାନନ୍ଦ ପଣ୍ଡା, ପ୍ୟାରୀମୋହନ ପାଣିଗ୍ରାହୀ, ମଧୁସୂଦନ ପାଣିଗ୍ରାହୀ, ମଦନ ମୋହନ ସିଂହଦେଓ, ବାଳକୃଷ୍ଣ ରଥ ଓ ଭୁବନାନନ୍ଦ ଦାସ ପ୍ରମୁଖ ବିଶିଷ୍ଟ ବ୍ୟକ୍ତିମାନେ ଆନନ୍ଦ ପ୍ରକାଶ କରି ଅଭିନନ୍ଦନ ଜଣାଇଥିଲେ । ବୀରମଦେବ ବର୍ମାଙ୍କ ପାଖରେ ଶହଶହ ଟେଲିଗ୍ରାମ ଆସି ପହଞ୍ଚିଥିଲା । ସାମୂହିକଭାବେ ଟିକାଲି ଓଡ଼ିଆ ଓ ଗୋସାଣୀ ନୂଆଗାଁ ଗ୍ରାମବାସୀ ମଧ୍ୟ ଅଭିନନ୍ଦନ ବାର୍ତ୍ତା ପଠାଇଥିଲେ । ଦୈନିକ ଆଶା

ଓ New Orissa ପତ୍ରିକାରେ ଅନେକ ଅଭିନନ୍ଦନ ପ୍ରକାଶ ପାଇଥିଲା । କଟକରୁ ଉତ୍କଳ ସାହିତ୍ୟ ସମାଜର ସମ୍ପାଦକ ଲକ୍ଷ୍ମୀନାରାୟଣ ସାହୁ ବିକ୍ରମଦେବ ବର୍ମାଙ୍କ ପାଖକୁ ଏକ ପତ୍ରରେ ଲେଖିଥିଲେ—

"Pray accept our hearty expressions at the news of Jeypur coming into the ken of New Orissa. Sir, your labours in the past and your constant and silent labours for the cause of Oriya amalgamation are too great for words. Our breasts are rising with a worth of joy and happiness ever expanding with the thought that though your blessings and good will, the cause of Orissa and specially Oriya literature will thrive with ever increasing amplitude and move on right lines. Your presence will ever be felt asa source ofi llum'nation to the Oriya race through literature which really gives tongue to the mute".

ଜୟପୁର ଅଞ୍ଚଳ ଓଡ଼ିଶାରେ ମିଶିବା ଯୋଗୁଁ ଏଠାକାର ଅଧିବାସୀ ଅତ୍ୟନ୍ତ ଆନନ୍ଦିତ ହୋଇଥିଲେ । ସେମାନଙ୍କର ବହୁଦିନର ଆଶା ସଫଳ ହୋଇଥିଲା । ଜୟପୁରକୁ ବାଦ ଦେଇ ଓଡ଼ିଶାର ସୀମା ନିର୍ଦ୍ଧାରଣ ହୋଇଥିବା ନିଷ୍ପତ୍ତି ଶ୍ୱେତପତ୍ରରେ ପ୍ରକାଶ ପାଇବା ପରେ ସର୍ବସାଧାରଣଙ୍କ ମନରେ ଯେଉଁ ଅସନ୍ତୋଷ ପ୍ରକାଶ ପାଇଥିଲା—ତାହାର ପରିପ୍ରକାଶ ଘଟିଥିଲା ଆନ୍ଦୋଳନ ମାଧ୍ୟମରେ । ତଥାପି ସେମାନେ ନିରୁତ୍ସାହ ହୋଇ ନଥିଲେ । ଏଣୁ ଖ୍ରୀ. ୧୯୩୪ ମେ' ମାସରେ ଉତ୍କଳ ସମ୍ମିଳନୀର ଏକ ସ୍ୱତନ୍ତ୍ର ଅଧିବେଶନ ଜୟପୁରଠାରେ ଅନୁଷ୍ଠିତ କରାଇଥିଲେ । ଏହି ସଭାରେ ହଜାର ହଜାର ଓଡ଼ିଆ ଉପସ୍ଥିତ ହୋଇଥିଲେ । ଆନ୍ଦୋଳନର ନେତାମାନେ ବିଭିନ୍ନ ଯୁକ୍ତି ମାଧ୍ୟମରେ ଜୟପୁର ଓଡ଼ିଶାରେ ରହିବା ଔଚିତ୍ୟ ପ୍ରତିପାଦନ କରିଥିଲେ । ସଭାରେ ଗୃହୀତ ହୋଇଥିବା ନିର୍ଦ୍ଧାରଣଗୁଡ଼ିକ ବ୍ରିଟିଶ୍ ସରକାରୀ କର୍ତ୍ତୃପକ୍ଷଙ୍କ ପାଖରେ ଦାଖଲ କରାଯାଇଥିଲା । ଏହି ସଭା ଆୟୋଜନ ତଥା ହଜାର ହଜାର ଲୋକଙ୍କ ରହିବା ଖାଇବା ଇତ୍ୟାଦି ଖର୍ଚ୍ଚ ମହାରାଜା ବିକ୍ରମଦେବ ବର୍ମା ନିଜେ ବହନ କରିଥିଲେ । ଜୟପୁର ଓଡ଼ିଶାରେ ମିଶିବା ନ ମିଶିବା କଥାଥିଲା

ସେଠାକାର ଓଡ଼ିଆଙ୍କ ଜୀବନ ମରଣ ସମସ୍ୟା । ଏଣୁ ଜୟପୁର ଓଡ଼ିଶାରେ ମିଶିବା ଯୋଗୁଁ ସର୍ବସାଧାରଣରେ ଆନନ୍ଦ ଉଲ୍ଲାସ ଖେଳି ଯାଇଥିଲା ।

## ଆର୍ଥିକ ଓ ଆତ୍ମିକ ବିକାଶ କାର୍ଯ୍ୟାବଳୀ

ମହାରାଜା ବିକ୍ରମଦେବ ବର୍ମା ନିଜର ରାଜତ୍ୱ କାଳରେ ନିଜ ରାଜ୍ୟ ଜୟପୁର ସମେତ ଓଡ଼ିଶା ପ୍ରଦେଶ ଓ ଆନ୍ଧ୍ର ଭାଷାଭାଷୀ ଅଞ୍ଚଳର ସାମଗ୍ରିକ ବିକାଶ ପାଇଁ ଅନେକ ଉନ୍ନୟନମୂଳକ କାର୍ଯ୍ୟ କରିଥିଲେ । ରାଜତ୍ୱ ଗ୍ରହଣ କରିବା ପୂର୍ବରୁ ନିଜର ସୀମିତ ସମ୍ବଳ ମଧ୍ୟରେ ବି ସେ ବ୍ୟୟବହୁଳ କାର୍ଯ୍ୟ ହାତକୁ ନେଇ ସଫଳତାର ସହିତ ସମାହିତ କରିପାରିଥିଲେ । କିନ୍ତୁ ଜୟପୁର ରାଜସିଂହାସନ ଆରୋହଣ ପରେ ଆର୍ଥିକ ପ୍ରତିବନ୍ଧକ ଦୂରେଇ ଯିବା ଯୋଗୁଁ ଅଧିକ ଆଗ୍ରହର ସହିତ ଉନ୍ନୟନ କାର୍ଯ୍ୟ କରିବା ପାଇଁ ସକ୍ଷମ ହୋଇଥିଲେ ।

ଓଡ଼ିଶାରେ କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବଙ୍କ ଦ୍ୱିତୀୟ ମନ୍ତ୍ରୀମଣ୍ଡଳ (୧୯୪୧-୧୯୦୪) ସମୟରେ କଟକ ମେଡ଼ିକାଲ କଲେଜ ପ୍ରତିଷ୍ଠା ହେଲା । ସେଥିପାଇଁ ଏ ରାଜ୍ୟର ରାଜା ମହାରାଜାଗଣ ବିପୁଳ ଅର୍ଥଦାନ କରିଥିଲେ । ମୟୂରଭଞ୍ଜର ସ୍ୱନାମଧନ୍ୟ ସ୍ୱର୍ଗତ ମହାରାଜା ଶ୍ରୀ ରାମଚନ୍ଦ୍ର ଭଂଜଦେଓଙ୍କ ନାମରେ ଏହି ଭେଷଜ ମହାବିଦ୍ୟାଳୟ ନାମିତ ହେଲା । ବିକ୍ରମଦେବ ବର୍ମା ଏଥି ସକାଶେ ୧ ଲକ୍ଷ ୩୦ ହଜାର ଟଙ୍କା ଦାନ ଦେଇ ଡାକ୍ତରୀ ଶିକ୍ଷା ପ୍ରସାର ପାଇଁ ଆଗ୍ରହ ପ୍ରକାଶ କରିଥିଲେ ।

ଉତ୍କଳ ବିଶ୍ୱବିଦ୍ୟାଳୟ ଖ୍ରୀ: ୧୯୪୩ ରେ ପ୍ରତିଷ୍ଠା ହେଲା । ଏହା ପରେ ପରେ ଓଡ଼ିଶା ସରକାରଙ୍କ ପକ୍ଷରୁ ବିଭିନ୍ନ ଜିଲ୍ଲା ସଦର ମହକୁମା ତଥା ପ୍ରତି ଜିଲ୍ଲାର ମୁଖ୍ୟ ସହରରେ ମହାବିଦ୍ୟାଳୟ ପ୍ରତିଷ୍ଠା ପାଇଁ ଉଦ୍ୟମ ହେଲା । ଏହି ସମରେ ଜୟପୁରଠାରେ କଲେଜ ପ୍ରତିଷ୍ଠା ଲାଭ କଲା । ସରକାର ଏହାକୁ 'ବିକ୍ରମଦେବ କଲେଜ' ନାମିତ କଲେ । ଏ କଲେଜ ପାଇଁ ବିକ୍ରମଦେବ ବର୍ମା ନିଜ ଖର୍ଚ୍ଚରେ କୋଠାବାଡ଼ି ନିର୍ମାଣ କରିଦେଲେ ଏବଂ ଛାତ୍ରାବାସ ନିର୍ମାଣ ପାଇଁ ବିସ୍ତୃତ ଜମି ଦାନ କରିଥିଲେ । ସାଧାରଣ ଶିକ୍ଷା କ୍ଷେତ୍ରରେ ଏ କଲେଜ ପ୍ରମୁଖ ଭୂମିକା ଗ୍ରହଣ କଲା । ବର୍ମା ମହୋଦୟ ଉତ୍କଳ ବିଶ୍ୱବିଦ୍ୟାଳୟ ସ୍ନାତକୋତ୍ତର ଛାତ୍ରଛାତ୍ରୀମାନଙ୍କ ମଧ୍ୟରେ ପ୍ରତିଯୋଗୀ

ମନୋଭାବ ସୃଷ୍ଟି କରିବା ଉଦ୍ଦେଶ୍ୟରେ ସର୍ବୋଚ୍ଚ ସ୍ଥାନ ହାସଲ କରୁଥିବା ଛାତ୍ରଛାତ୍ରୀଙ୍କ ପାଇଁ ପୁରସ୍କାର ବ୍ୟବସ୍ଥା କଲେ । ଏଥିପାଇଁ ସେ ସ୍ଥାୟୀ ଜମା ଆକାରରେ ଦଶ ହଜାର ଟଙ୍କା ଉତ୍କଳ ବିଶ୍ୱବିଦ୍ୟାଳୟକୁ ଦେଇଥିଲେ ।

ସ୍ୱାସ୍ଥ୍ୟସେବା ପାଇଁ ବିକ୍ରମଦେବ ବର୍ମାଙ୍କ ଦାନରେ ବିଶାଖାପାଟଣା ଠାରେ ମହିଳାମାନଙ୍କ ସକାଶେ ପ୍ରସୂତି ଓ ସ୍ତ୍ରୀରୋଗ ଚିକିତ୍ସାଳୟ ପ୍ରତିଷ୍ଠା ହେଲା । ଏହି ଚିକିତ୍ସାଳୟର ଉପଯୋଗିତା ସର୍ବାଦୌ ଉଲ୍ଲେଖଯୋଗ୍ୟ । ଏହାଦ୍ୱାରା ଲକ୍ଷଲକ୍ଷ ପ୍ରସୂତି ଅଶେଷ ଉପକାର ପାଇଲେ ।

ବୈଷୟିକ ଶିକ୍ଷାକ୍ଷେତ୍ରରେ ବିକ୍ରମଦେବ ବର୍ମାଙ୍କ ଅବଦାନ କିଛି କମ୍ ନୁହେ । ବିଶାଖାପାଟଣାସ୍ଥ ବିଜ୍ଞାନ ଓ କାରିଗରୀ ଶିକ୍ଷା ପାଇଁ ଉଦ୍ଦିଷ୍ଟ ଅନୁଷ୍ଠାନକୁ ବର୍ମା ମହୋଦୟ ଆର୍ଥିକ ସହାୟତା ଦେଇ ଏହାକୁ ଜୟପୁର ଇଷ୍ଟେଟ୍ ନାମରେ 'Jeypur College of Science & Technology' ନାମିତ କଲେ । ଶିକ୍ଷା ସହିତ ଆନୁସଙ୍ଗିକ ଜ୍ଞାନ ଆହରଣ ସକାଶେ ସେ ସବୁବେଳେ ଗୁରୁତ୍ୱ ଦେଉଥିଲେ । ଏଣୁ ବିଶାଖାପାଟଣାରେ Industrial Museum ବା ଶିଳ୍ପ ସଂଗ୍ରହାଳୟ ପ୍ରତିଷ୍ଠା କରି ଛାତ୍ରଛାତ୍ରୀଙ୍କ ଅଶେଷ ଉପକାର କଲେ ।.

ଶିକ୍ଷା, ସ୍ୱାସ୍ଥ୍ୟ ଓ ଶିଳ୍ପର ଉନ୍ନତି ସଙ୍ଗେ ସଙ୍ଗେ ଆତ୍ମିକ ବିକାଶ ପାଇଁ ଯେ ବହି, ପାଠାଗାର ଓ ପତ୍ରପତ୍ରିକାର ଯଥେଷ୍ଟ ଗୁରୁତ୍ୱ ରହିଛି — ଏହା ଅବିସମ୍ବାଦିତ । ଏ କ୍ଷେତ୍ରରେ ବିକ୍ରମଦେବ ବର୍ମା ସବୁବେଳେ ଅଧିକ ଧ୍ୟାନ ଦେଇଥିଲେ । ସେ ନିଜ ଜୟପୁର ରାଜ୍ୟରେ ରାଜଧାନୀ ଓ ଅନ୍ୟାନ୍ୟ ସହରରେ ଅନେକ ପାଠାଗାର ପ୍ରତିଷ୍ଠା କରିଥିଲେ । ମୁଦ୍ରଣ ଶିଳ୍ପର ବିକାଶ ପାଇଁ ବର୍ମା ମହୋଦୟ ଜୟପୁରରେ 'ବିକ୍ରମ ପ୍ରେସ୍' ସ୍ଥାପନ କରିଥିଲେ । ଏହା ଥିଲା ଅବିଭକ୍ତ କୋରାପୁଟ ଜିଲ୍ଲାର ପ୍ରଥମ ମୁଦ୍ରଣାଳୟ । ଏଠାରୁ ଖ୍ରୀ: ୧୯୪୦ ରେ ହରିହର ମିଶ୍ରଙ୍କ ସଂପାଦନାରେ 'ପ୍ରଜାବାଣୀ' ସାପ୍ତାହିକ ପତ୍ରିକା ପ୍ରକାଶନ ଆରମ୍ଭ ହୋଇ ପ୍ରାୟ ୨୦ ବର୍ଷଯାଏଁ ତାହା ପ୍ରକାଶିତ ହୋଇଥିଲା । ସମ୍ବାଦ ପରିବେଷଣ ଓ ସାହିତ୍ୟ ସୃଷ୍ଟିରେ ଏହି ପତ୍ରିକା ପ୍ରମୁଖ ଭୂମିକା ଗ୍ରହଣ କରିଥିଲା ।

ବିକ୍ରମଦେବ ବର୍ମା ବହୁ ସାହିତ୍ୟିକଙ୍କ ଅପ୍ରକାଶିତ କୃତି ନିଜ ଖର୍ଚ୍ଚରେ ପ୍ରକାଶ କରିଥିଲେ । ସେସବୁ ମଧ୍ୟରେ ଲକ୍ଷ୍ମୀନାରାୟଣ ସାହୁଙ୍କ 'Hill Tribes of Jeypur', ଚିନ୍ତାମଣି ମହାନ୍ତି ଗ୍ରନ୍ଥାବଳୀ ଓ ବୈକୁଣ୍ଠନାଥ ପଟ୍ଟନାୟକଙ୍କ କାବ୍ୟ କବିତା ଅନ୍ୟତମ । ଏସବୁ ବ୍ୟତୀତ ଅନେକ ଲେଖକଙ୍କୁ ସେମାନଙ୍କର ଲେଖା ପୁସ୍ତକ ଆକାରରେ ପ୍ରକାଶନ ପାଇଁ ଅର୍ଥସାହାଯ୍ୟ ଦେଇଥିଲେ ।

ନିଜେ ବିକ୍ରମଦେବ ବର୍ମା ଜୟପୁର ରାଜନଅର ଭିତରେ ବିରାଟ ଗ୍ରନ୍ଥାଗାର ପ୍ରତିଷ୍ଠା କରିଥିଲେ । ସେ ଅଧିକାଂଶ ସମୟ ଏହି ଗ୍ରନ୍ଥାଗାର ଭିତରେ ରହୁଥିଲେ । ଏଠାରେ ବିପୁଳ ପରିମାଣର ଓଡ଼ିଆ, ତେଲୁଗୁ, ସଂସ୍କୃତ, ଇଂରାଜୀ ଓ ହିନ୍ଦୀ ବହି ରହିଥିଲା । ଇତିହାସ, ଭାଷା, ସାହିତ୍ୟ ଓ ବେଦ ଉପନିଷଦ ଉପରେ ଗବେଷଣା କରୁଥିବା ବହୁ ଗବେଷକ ରାଜନଅରସ୍ଥ ଗ୍ରନ୍ଥାଗାରକୁ ଆସୁଥିଲେ । ଗବେଷକମାନେ ବହିପତ୍ର ପଢ଼ିବା ସଙ୍ଗେ ସଙ୍ଗେ ବିକ୍ରମଦେବ ବର୍ମାଙ୍କଠାରୁ ଅନେକ ମୂଲ୍ୟବାନ କଥା ଶୁଣି ନିଜ ଗବେଷଣାକୁ ସମୃଦ୍ଧ କରୁଥିଲେ ।

ଏହି ରାଜନଅର ପରିସରରେ ଏକ ଚିତ୍ରାଗାର ରହିଥିଲା । ବିକ୍ରମଦେବ ବର୍ମା ଏହାକୁ ଅତ୍ୟନ୍ତ ଆଗ୍ରହର ସହିତ ପ୍ରତିଷ୍ଠା କରିଥିଲେ । ଜଣେ ଶିଳ୍ପୀଙ୍କୁ ଶିକ୍ଷା ଗ୍ରହଣ ପାଇଁ ମାନ୍ଦ୍ରାଜ କଳା ମହାବିଦ୍ୟାଳୟକୁ ପଠାଇଥିଲେ । ସେ ଉଚ୍ଚଶିକ୍ଷା ପାଇ ଫେରିବା ପରେ ଏହି ଚିତ୍ରାଗାରରେ ନିଯୁକ୍ତ କରିଥିଲେ । ଶିଳ୍ପୀଜଣକ ବହୁ ମୂଲ୍ୟବାନ ତୈଳଚିତ୍ର ଓ ଅନେକ ମୂର୍ତ୍ତି ନିର୍ମାଣ କରି ଉକ୍ତ Art Galleryରେ ସ୍ଥାନିତ କରିଥିଲେ । ଏହି ଶିଳ୍ପୀଙ୍କ ନାମ ସୀମାଦ୍ରି ମହାରଣା । ଶିଳ୍ପୀ ମହାରଣା ପ୍ରସ୍ତୁତ କରିଥିବା କେତେକ ଶ୍ରେଷ୍ଠଶ୍ରେଷ୍ଠ ସୁନ୍ଦର କାରୁକାର୍ଯ୍ୟପୂର୍ଣ୍ଣ ମୂର୍ତ୍ତିକୁ ବିକ୍ରମଦେବ ବର୍ମା ଦେଶବିଦେଶର ବଶିଷ୍ଟ ଲୋକମାନଙ୍କୁ ଉପହାର ଦେଇଥିଲେ । ଦର୍ପଣ ଉପରେ ତୁଳିମୂନରେ ପ୍ରତିକୃତି ଆଙ୍କିବାରେ ଏହି ଶିଳ୍ପୀଙ୍କର ପ୍ରସିଦ୍ଧି ରହିଥିଲା । ସେ ବର୍ମା ମହୋଦୟଙ୍କର ଏଭଳି ଅସଂଖ୍ୟ ପ୍ରତିକୃତି ଦର୍ପଣ ଉପରେ ଆଙ୍କିଥିଲେ ଓ ସେଥିପାଇଁ କଳା ପ୍ରଦର୍ଶନୀଗୁଡ଼ିକରୁ ପୁରସ୍କୃତ ହୋଇଥିଲେ ।

ବିକ୍ରମଦେବ ବର୍ମାଙ୍କ ରାଜ୍ୟ ଶାସନ କାଳରେ ଏଭଳିଭାବେ ଜୟପୁର ରାଜ୍ୟ, ଓଡ଼ିଶା ପ୍ରଦେଶ ଓ ଆନ୍ଧ୍ର ଭାଷାଭାଷୀ ଅଞ୍ଚଳର ଆର୍ଥିକ ଏବଂ ଆତ୍ମିକ ବିକାଶ ପାଇଁ ବହୁ ଉଲ୍ଲେଖନୀୟ କାର୍ଯ୍ୟ ସମାପିତ ହୋଇଥିଲା ।

## ସାଧନାର ସର୍ବୋଚ୍ଚ ସୋପାନ

ବିକ୍ରମଦେବ ବର୍ମା ଦୀର୍ଘ ନିରାମୟ ଜୀବନ ଯାପନ କରିଥିଲେ । ସାଧନା ପାଇଁ ଉତ୍ତମ ସ୍ୱାସ୍ଥ୍ୟ ଯେ ଅପରିହାର୍ଯ୍ୟ—ଏହା ଯେ କେହି ବିନାଦ୍ୱିଧାରେ ସ୍ୱୀକାର କରିବେ । ବର୍ମା ମହୋଦୟଙ୍କ ସ୍ୱାସ୍ଥ୍ୟ ସମ୍ପଦ ଅକ୍ଷୁଣ୍ଣ ରହିଥିଲା । ତେଣୁ ସେ ବୃଦ୍ଧାବସ୍ଥାରେ ବି ଯୁବସୁଲଭ ଉତ୍ସାହ ନେଇ ନିଜର କାର୍ଯ୍ୟଧାରା ଅବ୍ୟାହତ ରଖିଥିଲେ । ତାଙ୍କର ସାହିତ୍ୟ ସାଧନାରେ ପୂର୍ଣ୍ଣବିକାଶ ଘଟିଥିଲା ଓ କ୍ରମେ ଲେଖାଗୁଡ଼ିକ ଅଧିକ ପରିପକ୍ୱ ତଥା ଭାବସମୃଦ୍ଧ ହୋଇପାରିଥିଲା । ପରିଣତ ବୟସରେ ସେ ତୁଳସୀ ଦାସ କୃତ ହିନ୍ଦୀ 'ବିନୟ ପତ୍ରିକା'ର ଗ୍ରନ୍ଥ ଓ 'କଳା ପୂର୍ଣ୍ଣୋଦୟ' ନାମକ ପ୍ରଖ୍ୟାତ ତେଲୁଗୁ ଗ୍ରନ୍ଥର ଯଥାକ୍ରମେ ପଦ୍ୟ ଓ ଗଦ୍ୟରେ ଓଡ଼ିଆ ଅନୁବାଦ କରିଥିଲେ । ଆନ୍ଧ୍ର ଅଞ୍ଚଳରେ ବହୁଳ ଭାବେ ପ୍ରଚଳିତ ହରିକଥା ଶୈଳୀରେ ବିକ୍ରମଦେବ ବର୍ମା ଓଡ଼ିଆରେ 'ପୁରନ୍ଦର ଦାସୀ ଚରିତ' ରଚନା କରିଥିଲେ । ଏହି ଗ୍ରନ୍ଥ ଗଦ୍ୟ, ପଦ୍ୟ ଓ ବିଭିନ୍ନ ରାଗ, ତାଳ, ଲୟ ଉପରେ ଆଧାରିତ ସଂଗୀତରେ ପରିପୂର୍ଣ୍ଣ ଥିଲା । ଏସବୁ ସମେତ ବର୍ମା ମହୋଦୟ ରଚନା ଓ ଅନୁବାଦ କରିଥିବା ପ୍ରାୟ ୨୦ ଖଣ୍ଡ ଗ୍ରନ୍ଥ ପ୍ରକାଶିତ ହୋଇଥିଲା । ଓଡ଼ିଆ ଓ ତେଲୁଗୁ ଭାଷାର ସେସବୁ ହିଁ ଉଭୟ ସାହିତ୍ୟ ଭଣ୍ଡାରର ଅମୂଲ୍ୟ ରତ୍ନ । ସେ ଯେକୌଣସି ଲେଖା ଲେଖିବା ବେଳେ ତା'ର ଉପଯୋଗିତା କଥା ପ୍ରଥମେ ଚିନ୍ତା କରୁଥିଲେ । ଯାହା ନୈତିକତା ଦୃଷ୍ଟିରୁ ମୂଲ୍ୟବାନ ଓ ଶିକ୍ଷଣୀୟ ସେହିଭଳି ରଚନାରେ ହିଁ ମନୋନିବେଶ କରୁଥିଲେ ।

ଭଗବଦ୍ ଗୀତା ମାହାତ୍ମ୍ୟ : ବିକ୍ରମଦେବ ବର୍ମାଙ୍କର ଏହା ପ୍ରଥମ ପ୍ରକାଶିତ ଗ୍ରନ୍ଥ । ସେ ଏଥିରେ ସଂସ୍କୃତ ଭାଗବତକୁ ନବାକ୍ଷରୀ ବୃତ୍ତରେ ଓଡ଼ିଆ ପଦ୍ୟାନୁବାଦ କରିଥିଲେ ।

ସଙ୍ଗୀତ ରାଧାମାଧବ ନାଟକ : ଏଥିରେ ରାଧିକାଙ୍କର ମାନଭଂଜନ ବୃତ୍ତାନ୍ତ ନାଟକ ଆକାରରେ ବର୍ଣ୍ଣିତ ହୋଇଛି । ପାତ୍ରପାତ୍ରୀଙ୍କର ସଂସ୍କୃତରେ କଥୋପକଥନ ଏ ନାଟକର ବିଶେଷତ୍ୱ ଓ ନୂତନତ୍ୱ । ଏ ନାଟକ ବହୁବାର ରଙ୍ଗମଞ୍ଚରେ ଅଭିନୀତ ହୋଇଛି । ଏ ବହିଟି ପଢିବା ପରେ ବ୍ୟାସକବି ଫକୀର ମୋହନ ସେନାପତି ନିଜର 'ଉତ୍କଳ ଭ୍ରମଣ' ବୃତ୍ତାନ୍ତରେ ଲେଖିଥିଲେ—

ତୁମ୍ଭର କବିତ୍ୱ ରାଧାମାଧବ ନାଟକ,
　　　　ପଢି ଜାନକରେ ମୋର ଜୀବନ ସାର୍ଥକ ।
ବିଶାଖାପାଟଣା ମଧ୍ୟେ ତେଲିଙ୍ଗ ଦେଶରେ,
　　　　ଛନ୍ତି ଦେଶୀଲୋକ କେହି ନାହାନ୍ତି ପାଶରେ
ଓଡ଼ିଆ ପଢିବା ପାଇଁ ସମର୍ପିଛ ପ୍ରାଣ,
　　　　ଧନ୍ୟଧନ୍ୟ ତୁମ୍ଭ ମାତୃଭାଷା ପ୍ରତି ଟାଣ ।
ସଂସ୍କୃତ, ଉତ୍କଳ, ଆନ୍ଧ୍ର କରଣ ଆପ୍ରସ,
　　　　ତିନି ଭାଷା ଭଲରୂପେ କରିଛ ଅଭ୍ୟାସ ।

କବିବର ରାଧାନାଥ ରାୟ ଏହି ରାଧାମାଧବ ନାଟକର କେତେକ ସଂସ୍କୃତ ସଳାପ ବିଭିନ୍ନ ସ୍ଥାନରେ ମୁହେଁ ମୁହେଁ ଉଚ୍ଚାରଣ କରି ଉତ୍କର୍ଷର ଉଦାହରଣ ମାନ ଦେଉଥିଲେ ।

ଶ୍ରୀଗୋବିନ୍ଦ ମଂଜରିକାବଳୀ : ଏହା ଶଙ୍କରାଚାର୍ଯ୍ୟଙ୍କ 'ମୋହମୁଦ୍-ଗର'ର ଓଡିଆ ଅନୁବାଦ । କବିତାଗୁଡିକ ମୂଳ ସଂସ୍କୃତ ଶ୍ଳୋକର ବୃତ୍ତରେ ଲିଖିତ । ଏ ପୁସ୍ତକର ଅନେକ ସଂସ୍କରଣ ପ୍ରକାଶିତ ହୋଇଛି ।

ଯଜୁର୍ବେଦୀୟ ସଂଧ୍ୟା ପ୍ରୟୋଗ : ଏ ପୁସ୍ତକ ବୈଦ୍ୟାନିଷ୍ଠ ବ୍ରାହ୍ମଣମାନଙ୍କ ଆଚରଣ ପାଇଁ ଉପଯୋଗୀ । ନିଜେ କ୍ଷତ୍ରିୟ ହେଲେ ମଧ୍ୟ ବୀରମଦେବ ବର୍ମା ନିଜର କର୍ମକର୍ମଣି, ଶୌଚସଦାଚାର ବେଦଶାସ୍ତ୍ର ମୁତାବକ କରୁଥିଲେ ଏବଂ ଏହା ସମସ୍ତଙ୍କ କରଣୀୟ ବୋଲି ମତପ୍ରକାଶ କରିଥିଲେ ।

ବୃଦ୍ଧଜାଚମନ ବିଧାନଂ : ଏ ବହି ମଧ୍ୟ ଶୌଚ ସଦାଚାର ତଥା ତ୍ରିବିଧ ଆଚମନର ବିଧିବିଧାନ ଉପରେ ଆଧାରିତ । ଏଥିରେ ସନ୍ନିବେଶିତ ପ୍ରତ୍ୟେକ ସଂସ୍କୃତ ଶ୍ଳୋକର ସରଳ ଓଡ଼ିଆ ଅନୁବାଦ ଦିଆଯାଇଥିଲା । ଏଣୁ ଏହା ସାଧାରଣ ଆଗ୍ରହୀ ତଥା ଜ୍ଞାନ ପିପାସୁଙ୍କ ମଧ୍ୟରେ ଖୁବ୍ ଆଦୃତ ଲାଭ କରିଥିଲା । ନିଜେ ବୀରଂମଦେବ ବର୍ମା ବିଭିନ୍ନ କର୍ମକର୍ମାଣି ବେଳେ ଏଥିର ଶ୍ଳୋକଗୁଡ଼ିକ ଅନର୍ଗଳ ଆବୃତ୍ତି କରୁଥିଲେ ।

କାଦମ୍ବରୀ କଥାସାର : ଏହା ମହାକବି ବାଣଭଟ୍ଟଙ୍କ ବିରଚିତ 'କାଦମ୍ବରୀ' କାବ୍ୟର ଓଡ଼ିଆ ଗଦ୍ୟାନୁବାଦ । ଅଳ୍ପ କଥାରେ ଉଚ୍ଚ ଏବଂ ଗମ୍ଭୀର ଭାବ ପ୍ରକାଶ କରିବାରେ ବୀରଂମଦେବ ବର୍ମା ଥିଲେ ସିଦ୍ଧହସ୍ତ । ବିରାଟକାୟ କାଦମ୍ବରୀ କାବ୍ୟକୁ ମାତ୍ର ୨୭ ପୃଷ୍ଠାରେ ସଂକ୍ଷେପରେ ସେ ପରିପ୍ରକାଶ କରି ପାରିଥିଲେ । ସମସ୍ତ ମୂଳଭାବ ଅକ୍ଷୁଣ୍ଣ ରହିଥିଲା । ଏ ପୁସ୍ତକ ବିଜ୍ଞ ପାଠକ ମହଲରେ ଆଲୋଡ଼ନ ସୃଷ୍ଟି କରିଥିଲା ।

ତୁଳସୀ ବିହିମ ରାମାୟଣ : ଭକ୍ତକବି ତୁଳସୀ ଦାସଙ୍କ ରାମଚରିତ ମାନସର ଓଡ଼ିଆ ଅନୁବାଦ । ଏହା ଚଉଦ ଅକ୍ଷରୀ ଛନ୍ଦରେ ରଚିତ । ବର୍ମା ମହୋଦୟ ଅନୁବାଦ କର୍ମରେ ମନୋନିବେଶ କରିଥିବା ବେଳେ ଅନ୍ୟଜଣେ ଅନୁବାଦକଙ୍କ ତୁଳସୀ ରାମାୟଣ ପ୍ରକାଶିତ ହୋଇଯିବା ଯୋଗୁଁ ନିଜେ ଆଉ ଏହି ଅନୁବାଦରେ ଆଗେଇଲେ ନାହିଁ ଏବଂ ସେହି ଅସଂପୂର୍ଣ୍ଣ ଗ୍ରନ୍ଥରେ ସ୍ୱୀୟ ଉଲ୍ଲେଖ କଲେ—

ତା ଅନୁବାଦ ତ ଆବର, ମୁଦ୍ରିତ ହୋଇଲା ଖବର ।
ସ୍ୱପ୍ନରେ ପ୍ରବେଶି ଜାଣିଲି, ଇତର କାଣ୍ଡ ନ ରଚିଲି ।

କିନ୍ତୁ ଏହି ଅସଂପୂର୍ଣ୍ଣ ରାମାୟଣ ମାନ୍ଦ୍ରାଜ ସ୍କୁଲ ସମୂହର ବହୁବର୍ଷ ଓଡ଼ିଆ ବିଭାଗ ପାଠ୍ୟପୁସ୍ତକ ଭାବେ ପ୍ରଚଳିତ ଥିଲା ।

ସରସ ଗୀତାବଳୀ : ଏଥିରେ ୩୫ଟି କବିତା ସ୍ଥାନ ପାଇଥିଲା । ବର୍ମା ମହୋଦୟ ବିଭିନ୍ନ ସମୟରେ ଏସବୁ ରଚନା କରିଥିଲେ ଓ ତତ୍କାଳୀନ ପତ୍ରପତ୍ରିକାରେ ପ୍ରକାଶ ପାଇଥିଲା । କେତେକର ଭଣିତା ନିଜ ନାମରେ

କରିଥିବା ସ୍ଥଳେ ବାମଦେବ ବର୍ମା ଆଉ କେତେକ କବିତାକୁ ମାଡ଼ୁଗୁଲର ରାଜେନ୍ଦ୍ରମଣି ଦେବୀ ଓ ଆମ୍ବିଦେବୀଙ୍କ ନାମରେ ଭଣିତ କରିଥିଲେ । ପାରଳାଖେମୁଣ୍ଡିର ପୁରୋହିତ ନୀଳମଣି ରଥ ଶର୍ମା ପତ୍ରପତ୍ରିକାଗୁଡ଼ିକରୁ ସଂଗ୍ରହ କରି ଏସବୁ ପୁସ୍ତକ ଆକାରରେ ପ୍ରକାଶ କରିଥିଲେ । ଏଥିରେ କବିତା ଓ ପ୍ରତ୍ୟେକ ସ୍ତବ, ଜଣାଣ ତଥା ଚୌପଦୀ ବିଭିନ୍ନ ରାଗ ତାଳରେ ରଚନା କରାଯାଇଥିଲା । ଶିଳ୍ପୀମାନଙ୍କ କଣ୍ଠରେ ଏ ସବୁର ବହୁଳ ପ୍ରସାର ଘଟିଥିଲା ।

ଭକ୍ତି ରତ୍ନମାଳିକା : ଏଥିରେ ୭୮ଟି ଶ୍ଲୋକ ଏବଂ କବିତା ସ୍ଥାନ ପାଇଛି । ବାମଦେବ ବର୍ମା ବିଭିନ୍ନ ସମୟରେ ଦେବଦେବୀ ଦର୍ଶନ ବେଳେ ସଂସ୍କୃତ ଶ୍ଲୋକଗୁଡ଼ିକ ମୁହେଁ ମୁହେଁ ରଚନା କରି ଗାଇ ଯାଉଥିଲେ । ବର୍ମା ମହୋଦୟଙ୍କ ପୁରୋହିତ ନୀଳମଣି ରଥ ଶର୍ମା ସେସବୁ ପଛରେ ବୁଲି ଲିପିବଦ୍ଧ କରୁଥିଲେ । ସେସବୁ ସମେତ ବାମଦେବ ବର୍ମାଙ୍କ ଅନ୍ୟାନ୍ୟ ସ୍ତବ, ସ୍ତୋତ୍ର, କବଚ ଆଦି ଏଥିରେ ସ୍ଥାନ ପାଇଛି । ସଂସ୍କୃତ ରଚନାଗୁଡ଼ିକ ଅସାଧାରଣ ପାଣ୍ଡିତ୍ୟପୂର୍ଣ୍ଣ ଏହା ସମୀକ୍ଷକମାନେ ମୁକ୍ତକଣ୍ଠରେ ସ୍ୱୀକାର କରିଛନ୍ତି ।

ଲୋକୋକ୍ତିରତ୍ନ : ଏଥିରେ ଅତି ମୂଲ୍ୟବାନ ପ୍ରବାଦ ସବୁ ରହିଛି । ଓଡ଼ିଆ ଭାଷା ଓ ଲୋକ ସଂସ୍କୃତିର ପ୍ରାଣ ଏସବୁରେ ଭରି ରହିଛି । ସଂସ୍କୃତିର ଆଲୋଚକ ଓ ଗବେଷକଙ୍କ ପାଇଁ ଏହା ଏକ ମୂଲ୍ୟବାନ ପୁସ୍ତକ ।

ଋତୁ ବର୍ଣ୍ଣନା : ଏଥିରେ ଗ୍ରୀଷ୍ମ, ବର୍ଷା, ଶରତ, ହେମନ୍ତ, ଶୀତ, ବସନ୍ତ ଋତୁର ସଂକ୍ଷେପ ଓ ସୁନ୍ଦର ବର୍ଣ୍ଣନା କରାଯାଇଛି । ପ୍ରକୃତିକୁ ପ୍ରାଣଭରି ଭଲ ପାଇବା ଓ ଅନୁଭବ କରିବାର ସୂକ୍ଷ୍ମାତିସୂକ୍ଷ୍ମ ଭାବଧାରା ଏଥିରେ ପ୍ରକାଶିତ ହୋଇଛି ।

ବୁଦ୍ଧଚରିତ ନାଟକ ; ଏହା ବୌଦ୍ଧଧର୍ମ ଉପରେ ଆଧାରିତ । ଗୌତମ ବୁଦ୍ଧଙ୍କ ଗୃହତ୍ୟାଗ, ସିଦ୍ଧିଲାଭ, ଧର୍ମପ୍ରଚାର ଆଦି ଉପାଖ୍ୟାନ ଏଥିରେ ବର୍ଣ୍ଣିତ । ଗୌତମ, ରାହୁଲ, ଯଶୋଧାରା ଓ ଅନ୍ୟାନ୍ୟ ୧୬ଟି ଚରିତ୍ର ମାଧ୍ୟମରେ ଏ ନାଟକର ବିଷୟବସ୍ତୁ ଉପସ୍ଥାପନ କରାଯାଇଛି ।

ଉତ୍କଳ କୁନ୍ଦମାଳା ନାଟକ : ଏହା ରାମାୟଣ ଉତ୍ତର କାଣ୍ଡକୁ ନେଇ ରଚିତ । ସୀତାଙ୍କ ହସ୍ତ ନିର୍ମିତ କୁନ୍ଦମାଳା ଦର୍ଶନ କରି ରାମଚନ୍ଦ୍ର ଶୋକାଭିଭୂତ ହୋଇ ପଡ଼ିଥିବା ମୁହୂର୍ତ୍ତକୁ ମୁଖ୍ୟ ଘଟଣା ଭାବେ ଏ ନାଟକରେ ଉପସ୍ଥାପନ କରାଯାଇଛି । ଓଡ଼ିଆରେ ଲେଖା ହୋଇଥିବା ଯୋଗୁଁ 'ଉତ୍କଳ କୁନ୍ଦମାଳା' ନାମକରଣ କରାଯାଇଛି ।

ଏସବୁ ପୁସ୍ତକର ବିଶଦ ଆଲୋଚନା ସେତେବେଳେ ପତ୍ରପତ୍ରିକାରେ ପ୍ରକାଶ ପାଇଥିଲା । ଅନେକ ପଣ୍ଡିତ ଏସବୁ ବହି ଉପରେ ନିବନ୍ଧମାନ ଲେଖିଥିଲେ ଏବଂ ଯେଉଁ ବହି ସ୍କୁଲ କଲେଜ ପାଠ୍ୟ ମନୋନୀତ ହୋଇଥିଲା, ସେ ସବୁର ସ୍ୱତନ୍ତ୍ର ଆଲୋଚନା ବହିମାନ ପ୍ରକାଶ ପାଇଥିଲା ।

ଓଡ଼ିଆ ଭାଷାରେ ଯେତିକ, ତେଲୁଗୁ ଭାଷାରେ ମଧ୍ୟ ପ୍ରାୟ ସମ ପରିମାଣର କୃତି ବିକ୍ରମଦେବ ବର୍ମାଙ୍କର ରହିଥିଲା । ଆନ୍ଧ୍ର ଭାଷାଭାଷୀ ଲୋକମାନଙ୍କ ଉପରେ ସେସବୁ ପୁସ୍ତକର ଅଖଣ୍ଡ ପ୍ରଭାବ ପଡ଼ିଥିଲା ।

ଶ୍ରୀନିବାସ କଲ୍ୟାଣମ୍ ନାଟକ : ଏହା କନ୍ନଡ଼ ଭାଷାରୁ ବର୍ମା ମହୋଦୟ ତେଲୁଗୁକୁ ଅନୁବାଦ କରିଥିଲେ । ବିଷ୍ଣୁ ଏବଂ ଲକ୍ଷ୍ମୀଙ୍କ ଏହି ଉପାଖ୍ୟାନ ବିଶ୍ୱବିଦ୍ୟାଳୟରେ ଉଚ୍ଚଶିକ୍ଷା ପାଇଁ ପାଠ୍ୟ ହୋଇଥିବା ଯୋଗୁଁ ଏ ବହି ଉପରେ ଅନେକ ପାଣ୍ଡିତ୍ୟପୂର୍ଣ୍ଣ ଆଲୋଚନା ପୁସ୍ତକ ପ୍ରକାଶ ପାଇଥିଲା ।

କୃଷ୍ଣାର୍ଜୁନ ଚରିତମ୍ : ଏହା ଜଣମାନର ତେଲୁଗୁ ପୁସ୍ତକ । ମାଡ଼ୁଗୁଲ ରାଜ୍ୟର ରାଜା କୃଷ୍ଣ ଭୂପତିଙ୍କ ସଭାପଣ୍ଡିତ ଏହା ରଚନା କରିଥିଲେ । ତାହାଙ୍କ ଉତ୍ତରାଧିକାରୀଙ୍କଠାରୁ ପାଣ୍ଡୁଲିପି ସଂଗ୍ରହ କରି ବିକ୍ରମଦେବ ବର୍ମା ଏହି ବହିର ପାଣ୍ଡିତ୍ୟପୂର୍ଣ୍ଣ ଟୀକା ଲେଖିଥିଲେ । କୃଷ୍ଣ ଅର୍ଜୁନଙ୍କର ବନ୍ଧୁତ୍ୱକୁ ଦ୍ୱିତ ଅର୍ଥବୋଧକ ଶବ୍ଦ ପ୍ରୟୋଗ କରି ବର୍ମା ମହୋଦୟ ଯେଉଁ ଦୀର୍ଘ ଆଲୋଚନା କରି ମୂଳଲେଖା ସହିତ ସଂପାଦନା କରିଥିଲେ—ତାହା ତେଲୁଗୁ ସାହିତ୍ୟ ରାଜ୍ୟରେ ଆଲୋଡ଼ନ ସୃଷ୍ଟି କରିଥିଲା । ଏହି ପୁସ୍ତକ ଯୋଗୁଁ 'ତେଲୁଗୁ ସାହିତ୍ୟରେ ବିକ୍ରମଦେବ ବର୍ମାଙ୍କ ଆସନ ପ୍ରଥମ ସୁଦୃଢ଼ ହୋଇ ଯାଇଥିଲା ।

ମାନବତୀ ଚରିତମ୍ : ଏହି ପୌରାଣିକ ତେଲୁଗୁ ନାଟକ ବିକ୍ରମଦେବ ବର୍ମାଙ୍କର ଅନ୍ୟତମ ଶ୍ରେଷ୍ଠ କୃତି । ଏହାର ଅନେକ ସଂସ୍କରଣ ପ୍ରକାଶିତ ହୋଇଥିଲା । ମାନବତୀର ଚରିତ୍ର ଚିତ୍ରଣରେ ବର୍ମା ମହୋଦୟଙ୍କ ଅନନ୍ୟତମାୟୁ ସାହିତ୍ୟିକ ପ୍ରତିଭାର ପରିପ୍ରକାଶ ହୋଇଥିବା ତେଲୁଗୁ ଗବେଷକମାନେ ମୁକ୍ତକଣ୍ଠରେ ସ୍ୱୀକାର କରିଛନ୍ତି ।

ମିତ ଗୀତଚିତ୍ର : ଏଥିରେ ମିତ କବିତା ସବୁ ସନ୍ନିବେଶିତ । ଏହି ସୁଚିନ୍ତିତ ଓ ଶିକ୍ଷଣୀୟ ଶ୍ରେଷ୍ଠ ଶ୍ରେଷ୍ଠ କବିତା ଆନ୍ଧ୍ର ସମାଜରେ ଗଭୀର ପ୍ରଭାବ ବିସ୍ତାର କରିଥିଲା । ଏ ପୁସ୍ତକ ତେଲୁଗୁ ଭାଷାର 'ଗୃହକାବ୍ୟମିତ' ଭଳି ସର୍ବ ସାଧାରଣରେ ଗୃହୀତ ହୋଇ ରହିଛି ।

ଗୋବିନ୍ଦ ମଂଜରୀକାବଳୀ : ଶଙ୍କରାଚାର୍ଯ୍ୟଙ୍କ 'ମୋହମୁଦ୍‌ଗର'କୁ ବିକ୍ରମଦେବ ବର୍ମା ଯେମିତି ଓଡ଼ିଆରେ ଅନୁବାଦ କରିଥିଲେ, ଠିକ୍ ସେମିତି ତେଲୁଗୁରେ ମଧ୍ୟ ଅନୁବାଦ କରିଥିଲେ । ଏହି ତେଲୁଗୁ ସଂସ୍କରଣ ବହୁବାର ମୁଦ୍ରିତ ହୋଇଥିଲା । ଆନ୍ଧ୍ର ବୁଦ୍ଧିଜୀବୀ ମହଲରେ ଏହା ପ୍ରିୟଗ୍ରନ୍ଥ ଥିଲା ।

ଶ୍ରୀକୃଷ୍ଣ ଗୀତବୃତ୍ତ : ଶ୍ରୀକୃଷ୍ଣ ଉପାସନା ପଦ୍ଧତି ଓ ନୀତିନିୟମ ଉପରେ ଆଧାରିତ ଏହି ପୁସ୍ତକ ବୈଷ୍ଣବମାନଙ୍କ ଅତି ପ୍ରିୟ ପାଠ୍ୟ ଥିଲା । ଏହାକୁ ସେମାନେ 'ହେଣ୍ଡବୁକ୍' ଭଳି ବ୍ୟବହାର କରୁଥିଲେ ।

ଏସବୁ ଗ୍ରନ୍ଥ ବ୍ୟତୀତ ଓଡ଼ିଆ, ତେଲୁଗୁ ଓ ସଂସ୍କୃତ ଭାଷାରେ ବିକ୍ରମ-ଦେବ ବର୍ମାଙ୍କର ଅସଂଖ୍ୟ ପ୍ରବନ୍ଧ, ଗଳ୍ପ, ନୀତିକଥା, ଚଗଡ଼ମାଳ, ରମ୍ୟ ରଚନା ଓ ଜ୍ୟୋତିଷ ଶାସ୍ତ୍ର ଉପରେ ଆଲୋଚନାମାନ ତତ୍କାଳୀନ ପତ୍ରପତ୍ରିକାରେ ପାର୍ଦ୍ଧ ୭୦ ବର୍ଷ ଧରି ପ୍ରକାଶ ପାଇଥିଲା । ବ୍ୟାକରଣ ଶାସ୍ତ୍ର ତଥା ବିଭିନ୍ନ ଶବ୍ଦ ଓ ବର୍ଣ୍ଣ ଉପରେ ଅନେକ ଶ୍ରେଷ୍ଠଶ୍ରେଷ୍ଠ ଲେଖା ସେ ଲେଖିଥିଲେ— ଯାହାକି ସେ ସମୟର ଦୈନିକଆଶା, ସାପ୍ତାହିକ ନବୀନ ପ୍ରଭୃତି ପତ୍ରିକାରେ ପ୍ରକାଶିତ ହୋଇ ପାଠକ ମହଲରେ ଖୁବ୍ ଆଦୃତି ଲଭ କରିଥିଲା ।

# ଅନ୍ତିମ ଜୀବନ ଓ ଦେହାବସାନ

ମହାରାଜା ବୀରମଦେବ ବର୍ମା ଶେଷଜୀବନ ଯାଏଁ ସଂପୂର୍ଣ୍ଣ କର୍ମକ୍ଷମ ଥିଲେ । ବ୍ୟାକରଣ, ଅଳଂକାର ଶାସ୍ତ୍ର ଓ ବେଦ ଉପନିଷଦ ଆଦି ଆଲୋଚନାରେ ଘଣ୍ଟା ଘଣ୍ଟା ଲିପ୍ତ ରହିଲେ ମଧ୍ୟ କେବେ କ୍ଲାନ୍ତ ହେଉନଥିଲେ । ଅନ୍ତିମ ଜୀବନ ସେ ପ୍ରଶାନ୍ତି ମଧ୍ୟରେ ଅତିବାହିତ କରିଥିଲେ । ଓଡ଼ିଶା ଏବଂ ଆନ୍ଧ୍ର ଅଞ୍ଚଳର ବହୁ ବିଶିଷ୍ଟ ସାହିତ୍ୟିକ ତଥା ବୁଦ୍ଧିଜୀବୀ ଆସି ରାଜାଙ୍କ ସହିତ ସାହିତ୍ୟର ବିଭିନ୍ନ ବିଭାଗ ଆଲୋଚନା କରୁଥିଲେ ।

ପତ୍ନୀ ହୀରା ଦେବୀ ଅତ୍ୟନ୍ତ ପତିପରାୟଣା ଓ ସୁଗୃହିଣୀ ଥିଲେ । ସେ ପରିବାରର ସମସ୍ତ ଜଂଜାଳ ନିଜେ ବହନ କରିଥିଲେ । ଝିଅ, ଜ୍ୱାଇଁ, ନାତି ନାତୁଣୀଙ୍କୁ ନେଇ ତାଙ୍କର ପରିବାର । ଏ ପରିବାର ସରଳ, ନିରାଡ଼ମ୍ବର ତଥା ଉଚ୍ଚ ଆଦର୍ଶର ବଶବର୍ତ୍ତୀ ଥିଲେ । ଖାଦ୍ୟପେୟ ସଂପୂର୍ଣ୍ଣ ସାତ୍ତ୍ୱିକ; ମିତବ୍ୟୟିତା ମହାରାଜାଙ୍କ ଆଜୀବନ ଆଦର୍ଶ ହୋଇ ରହିଥିଲା । ବାର୍ଷିକ ୨୨ ଲକ୍ଷ ଟଙ୍କା ଆୟ ହେଉଥିବା ବିଶାଳ ରାଜ୍ୟର ମହାରାଜା ବୀରମଦେବ ବର୍ମାଙ୍କ ମାସିକ ବ୍ୟକ୍ତିଗତ ଖର୍ଚ୍ଚ ଶହେ ଟଙ୍କାରୁ ଊଣା ହେଉଥିଲା । ଅଥଚ ଅତିଥି ଚର୍ଚ୍ଚା ଓ ଦାନଧର୍ମରେ ଲକ୍ଷ ଲକ୍ଷ ଟଙ୍କା ବ୍ୟୟ ହେଉଥିଲା ।

ରାଜକାର୍ଯ୍ୟରେ ଜାମାତା କୁମାର ବିଦ୍ୟାଧର ସିଂହଦେଓ ମହାରାଜାଙ୍କୁ ଯଥେଷ୍ଟ ସାହାଯ୍ୟ କରୁଥିଲେ । କୁମାର ବିଦ୍ୟାଧର ବହୁ ବର୍ଷ ଜୟପୁର ନଗରପାଳ ଏବଂ ଓଡ଼ିଶା ପବ୍ଲିକ ସର୍ଭିସ କମିଶନ ସଭ୍ୟଭାବେ କାର୍ଯ୍ୟ କରିବା ସଙ୍ଗେ ସଙ୍ଗେ ଇତିହାସ ଗବେଷଣା ଅବ୍ୟାହତ ରଖିଥିଲେ । ତାଙ୍କର ଦୁଇପୁଅ ଓ ଦୁଇଝିଅ ଥିଲେ । ଏଇମାନଙ୍କୁ ନେଇ ବୀରମଦେବ ବର୍ମା ଅନ୍ତିମ ଜୀବନ ଆନନ୍ଦରେ ବିତାଇଥିଲେ । ସାନ ନାତିକୁ 'ରାମକୃଷ୍ଣଦେବ' ନାମରେ ମହାରାଜା ପୋଷ୍ୟପୁତ୍ର ଭାବେ, ତା'ର ବାଲ୍ୟକାଳ ଖ୍ରୀ : ୧୯୩୫ ଠାରୁ ଗ୍ରହଣ କରି ନେଇଥିଲେ ।

ଅନ୍ତିମ ଜୀବନରେ ଜ୍ଞାନବୃଦ୍ଧ ମହାରାଜା ବୀରମଦେବ ବର୍ମାଙ୍କୁ ଭାରତର ବିଭିନ୍ନ ବିଶ୍ୱବିଦ୍ୟାଳୟ ପକ୍ଷରୁ ସମ୍ବର୍ଦ୍ଧନା ପାଇଁ ଆମନ୍ତ୍ରଣ ଆସୁଥିଲା । ସୁବିଧା ସୁଯୋଗ

ମୁତାବକ ନେଇ କେତେକ ଉତ୍ସବରେ ଯୋଗ ଦେଉଥିଲେ । ଉତ୍କଳ ବିଶ୍ୱବିଦ୍ୟାଳୟ ଖ୍ରୀ: ୧୯୪୯ ସମାବର୍ତ୍ତନ ଉତ୍ସବ କଟକଠାରେ ବର୍ମା ମହୋଦୟ ୮୦ ବର୍ଷ ବୟସରେ ଯେଉଁ ସାରଗର୍ଭକ ଦୀକ୍ଷାନ୍ତ ଭାଷଣ ଦେଇଥିଲେ—ତାହା ବିଶ୍ୱବିଦ୍ୟାଳୟ ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିଛି । ଏହାଥିଲା ତାଙ୍କ ଜୀବନର ଶ୍ରେଷ୍ଠ ତଥା ଶେଷ ଅଭିଭାଷଣ । ଏହି ମହାନ୍ ବ୍ୟକ୍ତିଙ୍କର ଅବସାନ ଘଟିଲା ୮୨ ବର୍ଷ ବୟସରେ । ମହାରାଜା ବିକ୍ରମଦେବ ବର୍ମା ଖ୍ରୀ. ୧୯୫୧ ଏପ୍ରିଲ ୧୪ ତାରିଖରେ ଶେଷ ନିଃଶ୍ୱାସ ତ୍ୟାଗ କଲେ ।

ମହାରାଜାଙ୍କ ମୃତ୍ୟୁବେଳକୁ ଉତ୍ତରାଧିକାରୀ ରାମକୃଷ୍ଣଦେବ ନାବାଳକ ଥିଲେ । ଏଣୁ ଜୟପୁର ରାଜ୍ୟ କୋର୍ଟ ଆଫ୍ ୱାର୍ଡ଼ସ ଅଧୀନରେ ରହିଲା । କିନ୍ତୁ ଯୁବରାଜ ରାମକୃଷ୍ଣଦେବ ସାବାଳକ ହେବା ଆଗରୁ ସରକାର ଜମିଦାରୀ ଉଚ୍ଛେଦ କରି ସାରିଥିଲେ । ସେଥିଯୋଗୁଁ ଖ୍ରୀ: ୧୯୫୨ ରେ କୋର୍ଟ ଅଫ୍ ୱାର୍ଡ଼ସ ହିଁ ଜୟପୁର ଜମିଦାରୀକୁ ଓଡ଼ିଶା ସରକାରଙ୍କ ହାତରେ ଅର୍ପଣ କରିଥିଲେ । ଅତଏବ ଦୀର୍ଘ ଛଅଶହ ବର୍ଷର ପ୍ରାଚୀନ ନନ୍ଦପୁର ତଥା ଆଧୁନିକ ଜୟପୁର ରାଜ୍ୟର ଶେଷ ରାଜା ଥିଲେ ବିକ୍ରମଦେବ ବର୍ମା ।

## ସମନ୍ୱୟ ସଂସ୍କୃତିର ବାର୍ତ୍ତାବହ

ବିକ୍ରମଦେବ ବର୍ମା ଥିଲେ ଏକ ବିରଳ ବ୍ୟକ୍ତିତ୍ୱର ଅଧିକାରୀ । ଦୁଇଟି ଭାଷା, ଦୁଇଟି ସାହିତ୍ୟ, ଦୁଇଟି ସଂସ୍କୃତି ତଥା ଦୁଇଟି ରାଜ୍ୟର ସାମାଜିକ ଜୀବନରେ ସମପରିମାଣର ଉଚ୍ଚପ୍ରତିଷ୍ଠା କେବଳ ତାଙ୍କର ପକ୍ଷରେ ସମ୍ଭବ ହୋଇ ପାରିଥିଲା । କେତେଦୂର ନିରପେକ୍ଷ ହେଲେ ଜଣେ ଲୋକ ଏଭଳି ଦୁଇଟି ଭିନ୍ନ ସାଂସ୍କୃତିକ ପରିସରରେ ହାର୍ଦ୍ଦିକତାର ସହିତ ଗ୍ରହଣୀୟ ହୋଇପାରେ--ତାହା କଳ୍ପନାତୀତ । ବର୍ମା ମହୋଦୟ ନିଜେ ଚେଷ୍ଟାକରି କୌଣସି କୃତ୍ରିମ ଉପାୟରେ ଏଭଳି ସମନ୍ୱୟ ରକ୍ଷା କରି ନଥିଲେ; ଆବାଲ୍ୟରୁ ପରିସ୍ଥିତି ଓ ପରିବେଷ୍ଟନୀ ତାଙ୍କୁ ସେହିଭଳି ଗଢ଼ି ତୋଳିଥିଲା । ଶୈଶବରେ ବୁଚିରାଜୁ ନାମକ ଅନ୍ଧ୍ର ଶିକ୍ଷକ ତାଙ୍କୁ ତେଲୁଗୁ

ଶିକ୍ଷା ଦେଉଥିବା ସଙ୍ଗେ ସଙ୍ଗେ ରଘୁନାଥ ରଥ ଓଡ଼ିଆ ପଢ଼ାଉଥିଲେ । ନିଜ ଘରେ ବାପା ମାଆଙ୍କ ଦ୍ୱାରା ଓଡ଼ିଶୀୟ ସଂସ୍କୃତିରେ ପ୍ରଭାବିତ ହୋଇଥିବା ସ୍ଥଳେ, ଘରୁ ବାହାରିଲେ ତେଲୁଗୁ ସଂସ୍କୃତି ପରିସରରେ ଚଳପ୍ରଚଳ ହେଉଥିଲେ । ନିଜର ପାଣ୍ଡିତ୍ୟ ତଥା ବଳିଷ୍ଠ ବ୍ୟକ୍ତିତ୍ୱ ଯୋଗୁ ସେ ସଂସ୍କୃତି ନିୟନ୍ତା ହୋଇପଡ଼ିଲେ ଏବଂ ଆନ୍ଧ୍ରୋତ୍କଳ ସଂସ୍କୃତି ସମନ୍ୱୟର ବାର୍ତ୍ତାବହ ବିବେଚିତ ହେଲେ । ଗବେଷକ ଡକ୍ଟର ଏ. ଭି. ଡି. ଶର୍ମା ନିଜର 'Integration of Andhra and Orissa Culture' ଗବେଷଣା ସନ୍ଦର୍ଭ ମୁଖବନ୍ଧରେ ମହାରାଜା ବିକ୍ରମଦେବ ବର୍ମାଙ୍କ ସଂପର୍କରେ ଲେଖିଛନ୍ତି "He distinguished himself by virtues of his talents and his services to Andhra and Orissa in the literary, socio-cultural and educational fields. He was a poet, scholar and play in Sanskrit, Telugu and Oriya. He had other abiding interests in the field of dramaturgy, public service and popular movements in Andhra and Orissa."

ଉଭୟ ରାଜ୍ୟରେ ବିକ୍ରମଦେବ ବର୍ମା ଥିଲେ ଉଚ୍ଚସମ୍ମାନର ଅଧିକାରୀ । ବିଶାଖାପାଟଣାଠାରେ Jeypore College of Science and Technology ସମ୍ମୁଖରେ ବର୍ମା ମହୋଦୟଙ୍କ ବ୍ରୋଞ୍ଜ ପ୍ରତିମୂର୍ତ୍ତି ଉନ୍ମୋଚନ କରି ମହାମାନ୍ୟା ସରୋଜିନୀ ନାଇଡ଼ୁ ତାଙ୍କୁ 'ରାଜର୍ଷି' ତଥା ସମନ୍ୱୟ ସଂସ୍କୃତିର ବାର୍ତ୍ତାବହ' ଆଖ୍ୟା ଦେଇଥିଲେ ।

କେବଳ ସାଧାରଣ କ୍ଷେତ୍ରରେ ନୁହେଁ; ରାଜା ମହାରାଜାଙ୍କ ସଂଗଠନରେ ବି ବିକ୍ରମଦେବ ବର୍ମା ଥିଲେ ଉଚ୍ଚସମ୍ମାନର ଅଧିକାରୀ । କ୍ଷତ୍ରିୟ ସମାଜର ସର୍ବୋପରି ଆସନ ଅଳଂକୃତ କରିବା ପାଇଁ ସେ ଖ୍ରୀମ ବରମ୍‌ଠାରେ ତାଙ୍କୁ ପାଗ୍ଗୁଟି ନିଆଯାଇଥିଲା ୩୫୦ ମହୀଶୂର ଷଣ୍ଢ ଯୋଗୁ ଯାଇଥିବା ସୁସଜ୍ଜିତ ବିମାନରେ । ସେ ଥିଲେ ପଣ୍ଡିତମାନଙ୍କ ପଣ୍ଡିତ ଓ ରାଜାମାନଙ୍କ ରାଜା । ଏତେବଡ଼ ବ୍ୟକ୍ତିତ୍ୱର ଅଧିକାରୀ ହୋଇ ବି ତାଙ୍କର ନମ୍ରତା ଜନସମାଜରେ ବିସ୍ମୟ ସୃଷ୍ଟି କରୁଥିଲା । ଅଧସ୍ତନ କର୍ମଚାରୀ ଓ ସାଧାରଣ ପ୍ରଜାଙ୍କୁ ମଧ୍ୟ ସେ 'ମହାଶୟ' ସମ୍ବୋଧନ କରୁଥିଲେ । ବିକ୍ରମଦେବ ବର୍ମା ଥିଲେ ଉଦାର

ଅବତାର । କ୍ଷମାଥିଲା ତାଙ୍କର ଚରିତ୍ରର ଆଭୂଷଣ । ଅନ୍ୟର ଭୁଲ ଯୋଗୁଁ ନିଜେ କ୍ଷତିଗ୍ରସ୍ତ ହୋଇଥିଲେ ମଧ୍ୟ ଭୁଲ କରିଥିବା ଲୋକଙ୍କୁ ସେ କେବେ ଦଣ୍ଡ ଦେଇ ନାହାନ୍ତି । ଏପରିକି ସପରିବାର ନିଜ ଗାଡ଼ିରେ ବିଶାଖାପାଟଣାରୁ ଜୟପୁର ଫେରୁଥିବା ବେଳେ ଅସାବଧାନତା ଯୋଗୁଁ ଦୁର୍ଘଟଣା ଘଟାଇଥିବା ଡ୍ରାଇଭର ପ୍ରତି ମଧ୍ୟ ସାମାନ୍ୟ ବିରକ୍ତି ପ୍ରକାଶ କରି ନଥିଲେ । ବ୍ୟକ୍ତିଗତ ଜୀବନରେ ଯେମିତି, ରାଜ୍ୟ ପରିଚାଳନା ଓ ସାମାଜିକ ତଥା ସାମୂହିକ କାର୍ଯ୍ୟରେ ମଧ୍ୟ ଠିକ୍ ସେମିତି ।

ବିକ୍ରମଦେବ ବର୍ମାଙ୍କ ଦୁଇଦଶନ୍ଧିର ଶାସନ ମଧ୍ୟରେ ସେ ଯେ ରାମରାଜ୍ୟ ପ୍ରତିଷ୍ଠା କରିଥିଲେ; କେବଳ ସେତିକି ନୁହେଁ ଜୟପୁର ଉଜ୍ଜୟିନୀ ଭଳି ଥିଲା ପଣ୍ଡିତମାନଙ୍କ ମିଳନ ସ୍ଥଳ । ଉଭୟ ଆନ୍ଧ୍ର ଓ ଉତ୍କଳର ଜ୍ଞାନୀ, ଗୁଣୀ, ସାହିତ୍ୟିକ, ଗବେଷକ, ସଂସ୍କୃତବିତ୍ ଓ ବୁଦ୍ଧିଜୀବୀମାନଙ୍କ ସମାବେଶ ଜୟପୁରକୁ ସଂସ୍କୃତିତୀର୍ଥରେ ପରିଣତ କରିଥିଲା । ଏ ତୀର୍ଥର କେନ୍ଦ୍ରବିନ୍ଦୁ ଥିଲେ ମହାରାଜା । ସମସ୍ତ ଅତିକ୍ରାନ୍ତ ହୋଇ ସାରିଛି । କିନ୍ତୁ ମହାରାଜା ବିକ୍ରମଦେବ ବର୍ମା ଆନ୍ଧ୍ରୋତ୍କଳ ସାଂସ୍କୃତିକ ସମନ୍ୱୟର ବାର୍ତ୍ତାବହ ହୋଇ ଉଭୟ ରାଜ୍ୟର ଇତିହାସରେ ରହିଛନ୍ତି ଓ ଚିରଦିନ ରହିବେ ।

